# ବ୍ରହ୍ମ ସଙ୍ଗୀତ

ଦ୍ୱିତୀୟ ସଂସ୍କରଣ

ଉତ୍କଳ ବ୍ରାହ୍ମ ସମାଜ

ଓଡ଼ିଆ ବଜାର, କଟକ-୭୫୩୦୦୧

*Digitized by srujanika@gmail.com*

ପ୍ରକାଶନ କମିଟି,
ଉତ୍କଳ ବ୍ରାହ୍ମ ସମାଜ କର୍ତ୍ତୃକ
ପ୍ରକାଶିତ ଓ ସର୍ବସ୍ୱତ୍ୱ ସଂରକ୍ଷିତ

ଦ୍ୱିତୀୟ ସଂସ୍କରଣ (ପରିବର୍ତ୍ତିତ ଓ ପରିବର୍ଦ୍ଧିତ)
ପ୍ରକାଶନ : ମାଘ ମାସ, ୧୩୮୮ ସାଲ
ମୂଲ୍ୟ : ଦୁଇଟଙ୍କା ମାତ୍ର

ମୁଦ୍ରଣ :
ପୁଷ୍ପଗିରି ପ୍ରେସ, କଟକ-୭୫୩୦୦୨

Digitized by srujanika@gmail.com

# ବିଷୟ ସୂଚୀ



Digitized by srujanika@gmail.com

Digitized by srujanika@gmail.com

Digitized by srujanika@gmail.com

Digitized by srujanika@gmail.com

## ଗଦ୍ୟାଂଶ



Digitized by srujanika@gmail.com

# ମୁଖବନ୍ଧ

ବ୍ରହ୍ମ ସଙ୍ଗୀତର ପ୍ରଥମ ସଂସ୍କରଣ ସ୍ୱର୍ଗୀୟ ବିଶ୍ୱନାଥ କରଙ୍କ ଦ୍ୱାରା ସଙ୍କଳିତ ; ସ୍ୱର୍ଗୀୟ ବିଶ୍ୱନାଥ କର ଓ ସ୍ୱର୍ଗୀୟ ଲକ୍ଷ୍ମୀନାରାୟଣ ପଟ୍ଟନାୟକଙ୍କ ଦ୍ୱାରା ୧୯୨୬ ଖ୍ରୀଷ୍ଟାବ୍ଦରେ ମୁଦ୍ରିତ ଏବଂ ଉତ୍କଳ ବ୍ରାହ୍ମ ସମାଜ ଦ୍ୱାରା ପ୍ରକାଶିତ ହୋଇଥିଲା । ତାହା ୧୯୮୯ ମସିହା ବେଳକୁ ନିଃଶେଷ ହୋଇ ଯାଇଥିଲା । ତେଣୁ ଉତ୍କଳ ବ୍ରାହ୍ମ ସମାଜରେ ଏବଂ ଓଡ଼ିଶାର ଅନ୍ୟାନ୍ୟ ବ୍ରାହ୍ମ ସମାଜ ତଥା ଉତ୍କଳବାସୀ ବ୍ରାହ୍ମମାନଙ୍କ ମଧ୍ୟରେ ଏହାର ଅଭାବ ବିଶେଷ ଭାବେ ଅନୁଭୂତ ହେଉଥିଲା । ଏହି ଅଭାବ ପୂରଣ ନିମିତ୍ତ ବିଶେଷ ଭାବେ ଚିନ୍ତା କରାଗଲା । ଏହି ଛଡ଼ା ଉତ୍କଳନିବାସୀ ବ୍ରାହ୍ମମାନଙ୍କର ଏବର ଏକ ସଗଠନ, ଯାହାକି, "ଓଡ଼ିଶା ବ୍ରାହ୍ମ ସଭା" ନାମରେ ପରିଚିତ, ତାହାର କେତେକ ଅଧିବେଶନରେ ବ୍ରାହ୍ମଧର୍ମର ପ୍ରଚାର ଓ ପ୍ରସାର ନିମିତ୍ତ ଓଡ଼ିଆ ଭାଷାରେ ପୁସ୍ତକାଦିର ବିଶେଷ ଅଭାବର ଆଲୋଚନା ହେବାର ଦେଖାଗଲା । ଏହାର ଅଭାବ ପୂରଣ ନିମିତ୍ତ ବଙ୍ଗଳା ଭାଷାରେ "ବ୍ରହ୍ମସଙ୍ଗୀତ"ର ଅନୁରୂପ ଓଡ଼ିଆ ଭାଷାରେ ଏକ "ବ୍ରହ୍ମସଙ୍ଗୀତ" ସଙ୍କଳନ ନିମିତ୍ତ ଲକ୍ଷ୍ୟ ରଖାଗଲା ।

ଏହାର ଦ୍ୱିତୀୟ ସଂସ୍କରଣକୁ ପରିବର୍ତ୍ତିତ ଓ ପରିବର୍ଦ୍ଧିତ ସଂସ୍କରଣ ରୂପେ ମୁଦ୍ରଣ କରିବା ସକାଶେ କଲିକତାସ୍ଥିତ "ଗୋପାଳପୁର ସାଗର ସାଧନ ଆଶ୍ରମ ଟ୍ରଷ୍ଟ ଟ ୫୦୦ ଆର୍ଥିକ ସାହାଯ୍ୟ ଦେଇଥିବାରୁ "ଉତ୍କଳ ବ୍ରାହ୍ମ ସମାଜ" ଏଥିପାଇଁ ଟ୍ରଷ୍ଟଙ୍କୁ ଆନ୍ତରିକ ଧନ୍ୟବାଦ ଜ୍ଞାପନ କରୁଅଛି । ଅବଶିଷ୍ଟ ଆବଶ୍ୟକୀୟ ଆର୍ଥିକ ସାହାଯ୍ୟ ସ୍ୱର୍ଗତ ମଧୁସୂଦନ ରାଓଙ୍କର ବଂଶଧରମାନେ ମୁକ୍ତ ହସ୍ତରେ ସାହାଯ୍ୟ କଲେ ଏବଂ ଏହାର ଅନ୍ୟାନ୍ୟ କାର୍ଯ୍ୟରେ ଯେଉଁମାନେ ସାହାଯ୍ୟ ଦେଲେ, ଉତ୍କଳ "ବ୍ରାହ୍ମ ସମାଜ" ସେମାନଙ୍କୁ କୃତଜ୍ଞତା ଜଣାଉଅଛି ।

ପ୍ରଥମ ସଂସ୍କରଣ "ବ୍ରହ୍ମ ସଙ୍ଗୀତ"ରେ ଆବଶ୍ୟକୀୟ ପରିବର୍ତ୍ତନ କରାଯାଇ ତାହା ସହିତ ବ୍ରାହ୍ମ ସମାଜ ସକାଶେ ଆବଶ୍ୟକ ସାମାଜିକ ପ୍ରାର୍ଥନା, କେତେକ ସାଧାରଣ ପାରିବାରିକ ଅନୁଷ୍ଠାନର ପ୍ରାର୍ଥନା ଏବଂ ତଦନୁଯାୟୀ ଆବଶ୍ୟକ ସଙ୍ଗୀତ, ବ୍ରାହ୍ମଧର୍ମର ମୂଳସତ୍ୟ, ବ୍ରାହ୍ମ ସମାଜର ଆଦର୍ଶ, ବ୍ରହ୍ମୋପାସନାର ନିୟମ ପ୍ରଣାଳୀ

Digitized by srujanika@gmail.com

ମନ୍ତ୍ରୋପନିଷଦରୁ କେତୋଟି ଆବଶ୍ୟକୀୟ ମନ୍ତ୍ର ଓ ଶିଶୁମାନଙ୍କ ନିମନ୍ତେ ଶିଶୁ-ସଙ୍ଗୀତ ଯୋଗ କରାଯାଇ "ବ୍ରହ୍ମ ସଙ୍ଗୀତ"ର ଏକ ପୂର୍ଣ୍ଣାଙ୍ଗ ପରିବର୍ତ୍ତିତ ଓ ପରିବର୍ଦ୍ଧିତ ସଂସ୍କରଣ ରୂପେ ପ୍ରକାଶ କରିବାକୁ ସ୍ଥିର କରାଗଲା ।

ଏହି ସଂସ୍କରଣରେ ସ୍ୱର୍ଗୀୟ ଭକ୍ତ କବି ମଧୁସୂଦନ ରାଓ, ଭକ୍ତ ପଦ୍ମଲୋଚନ ଦାସ, ସାଧୁଚରଣ ରାୟ, ଭବଗ୍ରାହୀ ଦାସ ଓ ଚତୁର୍ଭୁଜ ପଟ୍ଟନାୟକଙ୍କ ରଚିତ ସଙ୍ଗୀତ ରଚନାବଳୀ ଏବଂ ବଙ୍ଗଳା ବ୍ରହ୍ମସଙ୍ଗୀତ (ଯାହାକି କଲିକତାସ୍ଥିତ ସାଧାରଣ ବ୍ରାହ୍ମ ସମାଜଦ୍ୱାରା ପ୍ରକାଶିତ)ରୁ କେତେକ ଆବଶ୍ୟକ ସମାହୃତ ସ୍ତୋତ୍ର ଓ ବନ୍ଦନା ଓଡ଼ିଆରେ ଅନୁବାଦିତ କରାଯାଇ ଏହା ସହିତ ସନ୍ନିବେଶିତ କରାଯାଇଅଛି । ପ୍ରଥମ ସଂସ୍କରଣରେ ଚିହ୍ନିତ ହୋଇ ପାରି ନ ଥିବା ଭକ୍ତକବି ମଧୁସୂଦନ ରାଓଙ୍କ ସଙ୍ଗୀତ-ଗୁଡ଼ିକୁ ଏହି ସଂସ୍କରଣରେ "ଭକ୍ତକବି ମଧୁସୂଦନ ରାଓଙ୍କ ଗ୍ରନ୍ଥାବଳୀ" ମାଧ୍ୟମରେ ଚିହ୍ନିତ କରିବାର ଚେଷ୍ଟା କରାଯାଇଅଛି ଏବଂ ଅନ୍ୟ କବିମାନଙ୍କର ସଙ୍ଗୀତଗୁଡ଼ିକୁ ଚିହ୍ନିତ କରାଯାଇ ପାରି ନାହିଁ । ତାହା ଏହାର ପରବର୍ତ୍ତୀ ସଂସ୍କରଣରେ ଚିହ୍ନିତ କରିବାର ଲକ୍ଷ୍ୟ ରଖାଗଲା ।

ବ୍ରହ୍ମ ସଙ୍ଗୀତର ଏହି ଦ୍ୱିତୀୟ ସଂସ୍କରଣ "ଉତ୍କଳ ବ୍ରାହ୍ମ ସମାଜ" ତଥା ଅନ୍ୟସ୍ଥାନର ବ୍ରାହ୍ମ ପରିବାରର ବ୍ରାହ୍ମଭାବାପନ୍ନ ବ୍ୟକ୍ତିମାନଙ୍କର ଏବଂ ଉତ୍କଳର ସଂସ୍କାରପ୍ରେମୀ ବନ୍ଧୁମାନଙ୍କର ସମାନ ଲକ୍ଷ୍ୟ ଓ ଉଦ୍ଦେଶ୍ୟ କିଞ୍ଚିତ୍ ପରିମାଣରେ ପୂରଣ କରିପାରିଲେ "ଉତ୍କଳ ବ୍ରାହ୍ମ ସମାଜ"ର ଶ୍ରମ ସାର୍ଥକ ହେବ ।

ଶେଷରେ ଏହା "ଉତ୍କଳ ବ୍ରାହ୍ମ ସମାଜ"ର "ପ୍ରକାଶନ କମିଟି"ର ଅନୁମୋଦନ ଲାଭ କଲା ଉତ୍ତାରୁ ପ୍ରକାଶ କରିବା ସକାଶେ ସ୍ଥିର କରାଗଲା ।

**ସମ୍ପାଦକ,**

**ଉତ୍କଳ ବ୍ରାହ୍ମ ସମାଜ**

ଓଡ଼ିଆ ବଜାର, କଟକ-୧

Digitized by srujanika@gmail.com

# ନିବେଦନ

"ବ୍ରହ୍ମ ସଙ୍ଗୀତ"ର ପ୍ରଥମ ସଂସ୍କରଣ ୧୯୨୬ ଖ୍ରୀଷ୍ଟାବ୍ଦରେ "ଉତ୍କଳ ବ୍ରାହ୍ମ ସମାଜ" ଦ୍ୱାରା ପ୍ରକାଶିତ ହୋଇଥିଲା । ତାହା ନିଃଶେଷ ହୋଇ ଯିବାରୁ ତାହାର ୨ୟ ସଂସ୍କରଣ ଏକ ପରିବର୍ତ୍ତିତ ଓ ପରିବର୍ଦ୍ଧିତ ସଂସ୍କରଣ ରୂପେ ପୁନଶ୍ଚ "ଉତ୍କଳ ବ୍ରାହ୍ମ ସମାଜ" ଦ୍ୱାରା ପ୍ରକାଶିତ ହେଲା । ତେଣୁ "ଉତ୍କଳ ବ୍ରାହ୍ମ ସମାଜ" ଏବଂ ଉତ୍କଳ ନିବାସୀ ସମସ୍ତ ବ୍ରାହ୍ମ ଭାଇ ଭଉଣୀ ମାନଙ୍କୁ ଅନୁରୋଧ କରାଯାଉ ଅଛି କି, ଯଦିଚ ଏହି ସଂସ୍କରଣରେ କିଛି ତ୍ରୁଟି ରହିଯାଇଥାଏ, ସେମାନେ ଦୟାପୂର୍ବକ ତ୍ରୁଟି ମାର୍ଜନା କରିବେ ଏବଂ ଏହାର ପରବର୍ତ୍ତୀ ସଂସ୍କରଣକୁ ଅଧିକ ପରିବର୍ଦ୍ଧିତ ଓ ସଂଶୋଧିତ ସଂସ୍କରଣ ରୂପେ ପ୍ରକାଶ କରିବା ନିମିତ୍ତ ସେମାନଙ୍କର ମୂଲ୍ୟବାନ ପରାମର୍ଶ, ସାହାଯ୍ୟ ଓ ସହଯୋଗ ଦାନ କରିବେ ।

ଓଡ଼ିଆବଜାର
କଟକ-୧
ତା ୨୪ । ୧ । ୧୯୮୨

**ସମ୍ପାଦକ,**
ପ୍ରକାଶନ କମିଟି
**ଉତ୍କଳ ବ୍ରାହ୍ମ ସମାଜ**

---

# ବ୍ରାହ୍ମଧର୍ମର ମୂଳ ସତ୍ୟ

୧ । ଈଶ୍ୱର ମାତ୍ର ଏକ । ସେ ଚିନ୍ମୟ । ତାଙ୍କର ଅବୟବ ନାହିଁ । ସେ ଅନନ୍ତ । ସେ ସର୍ବବ୍ୟାପୀ, ସର୍ବଶକ୍ତିମାନ । ସେ ସୃଷ୍ଟିକର୍ତ୍ତା, ପାଳନକର୍ତ୍ତା, ନିୟାମକ ଓ ବିଧାନକର୍ତ୍ତା । ସେ ଜ୍ଞାନମୟ, ମଙ୍ଗଳମୟ, ପ୍ରେମମୟ, ପୁଣ୍ୟମୟ ଓ ଆନନ୍ଦମୟ ।

୨ । ମାନବାତ୍ମା ଅବିନଶ୍ୱର (ବିନଷ୍ଟ ହୁଏ ନାହିଁ) ଏବଂ ଅନନ୍ତ ଉନ୍ନତିର ଅଧିକାରୀ । ତାହାର କୃତକର୍ମ ନିମନ୍ତେ ସେ ଈଶ୍ୱରଙ୍କ ନିକଟରେ ଦାୟୀ ।

Digitized by srujanika@gmail.com

୩ । ପରମେଶ୍ୱର (ଭଗବାନଙ୍କର) ଉପାସନା କରିବା ମନୁଷ୍ୟମାତ୍ରର ଅବଶ୍ୟ କର୍ତ୍ତବ୍ୟ । ତାହାଦ୍ୱାରାହିଁ ମଣିଷର ଐହିକ(ଜାଗତିକ)ଏବଂ ପାରତ୍ରିକ ମଙ୍ଗଳ ସାଧନ ଘଟେ । ଉପାସନା କରାଯାଏ ମନମଧ୍ୟରେ, ବାହାରର ଆଚାର ଅନୁଷ୍ଠାନ ସାହାଯ୍ୟରେ ନୁହେଁ । ଈଶ୍ୱରଙ୍କ ଲାଗି ମନର ପ୍ରୀତି ଏବଂ ତାଙ୍କର ପ୍ରିୟକାର୍ଯ୍ୟ କର୍ତ୍ତବ୍ୟ ଦ୍ୱାରାହିଁ ତାଙ୍କର ଉପାସନା କରାଯାଏ ।

୪ । କୌଣସି ପ୍ରକାର ସୀମାବଦ୍ଧ ବ୍ୟକ୍ତି ବା ବସ୍ତୁକୁ ଈଶ୍ୱର ବୋଲି ବିଚାରିବା ଅଥବା ଈଶ୍ୱରଙ୍କର ଅବତାର ଜ୍ଞାନ କରିବା, ଏପରିକି, ଈଶ୍ୱରଙ୍କର ନିକଟକୁ ନେଇଯିବାର ମାଧ୍ୟମ ରୂପେ ଉପାସନା (ପୂଜା) କରିବା କର୍ତ୍ତବ୍ୟ ନୁହେଁ ।

୫ । ଜାତି ଏବଂ ଧର୍ମସମ୍ପ୍ରଦାୟର ବାଛ ବିଚାର ନ କରି ସବୁ ଶାସ୍ତ୍ରରୁ ଓ ସାଧୁଙ୍କ ଉପଦେଶରୁ ବିଶେଷ ଶ୍ରଦ୍ଧାସହ ସତ୍ୟକୁ ଗ୍ରହଣ କରିବା ଦରକାର । ତଥାପି କୌଣସି ଗୋଟିଏ ଶାସ୍ତ୍ରଗ୍ରନ୍ଥ ଅବା ବ୍ୟକ୍ତି (ମଣିଷ) ପୂରାପୂରି ଭ୍ରମ ପ୍ରମାଦ ଶୂନ୍ୟ ବୋଲି ଗ୍ରହଣ କରିବା, ଅଥବା, ଧର୍ମସାଧନାର ଏକମାତ୍ର ଉପାୟ ବୋଲି ଗ୍ରହଣ କରିବା କର୍ତ୍ତବ୍ୟ ନୁହେଁ ।

୬ । ଈଶ୍ୱରଙ୍କଠାରେ ପିତୃତ୍ୱ ଏବଂ ସବୁ ମାନବଙ୍କୁ ଭ୍ରାତୃରୂପେ ଗ୍ରହଣହିଁ ଧର୍ମର ସାରକଥା ।

୭ । ଈଶ୍ୱର ପୁଣ୍ୟକାର୍ଯ୍ୟର ପୁରସ୍କାର କର୍ତ୍ତା ଓ ପାପକାର୍ଯ୍ୟର ଦଣ୍ଡଦାତା । ଏ ପୁରସ୍କାର ଓ ଦଣ୍ଡ ତାଙ୍କରହିଁ କରୁଣାରୁ ଜାତ । ଏତଦ ଉଭୟହିଁ ମାନବାତ୍ମାର କଲ୍ୟାଣ ଲାଗି ଉଦ୍ଦିଷ୍ଟ ।

୮ । କୃତପାପ ଲାଗି ଅକୃତ୍ରିମ(ଆନ୍ତରିକ) ଏବଂ ବ୍ୟାକୁଳ ଅନ୍ତରର ଅନୁତାପ ଓ ପାପ କାର୍ଯ୍ୟରୁ ନିବୃତ୍ତ ରହିବା (ନ କରିବା) ହିଁ ପାପର ପ୍ରାୟଶ୍ଚିତ୍ତ ।

୯ । ଜ୍ଞାନ, ପ୍ରେମ ଓ ପବିତ୍ରକାର୍ଯ୍ୟ ଦ୍ୱାରା ଈଶ୍ୱରଙ୍କ ସହିତ ଯୁକ୍ତହୋଇ ସଦାସର୍ବଦା ତାଙ୍କ ଦିଗରେ ଅଗ୍ରସର ହେବାହିଁ ମୁକ୍ତିର ଅବସ୍ଥା ।

---

Digitized by srujanika@gmail.com

# ବ୍ରାହ୍ମଧର୍ମ ବୀଜ

୧। ପୂର୍ବେ କେବଳ ଏକମାତ୍ର ପରମବ୍ରହ୍ମ ରହିଥିଲେ। ଅନ୍ୟ ଆଉ କିଛି ନ ଥିଲା। ସେ ଏ ସମୁଦାୟ (ସମଗ୍ର ସୃଷ୍ଟି) ସୃଜନା କଲେ।

୨। ସେ ଜ୍ଞାନସ୍ୱରୂପ, ଅନନ୍ତସ୍ୱରୂପ, ମଙ୍ଗଳସ୍ୱରୂପ, ନିତ୍ୟ, ନିୟନ୍ତା, ସର୍ବଜ୍ଞ, ସର୍ବବ୍ୟାପୀ, ସର୍ବପ୍ରିୟ, ନିରବୟବ, ଏକମାତ୍ର ଅଦ୍ୱିତୀୟ, ସର୍ବଶକ୍ତିମାନ, ସ୍ୱତନ୍ତ୍ର ଓ ପରିପୂର୍ଣ୍ଣ। କାହାରି ସହିତ ତାହାଙ୍କର ଉପମା (ତୁଳନା) ହୋଇପାରେ ନାହିଁ।

୩। ଏକମାତ୍ର ତାହାଙ୍କ ଉପାସନା ଦ୍ୱାରା ଐହିକ (ଜାଗତିକ) ଓ ପାରତ୍ରିକ (ପରଲୌକିକ) ମଙ୍ଗଳ ହୋଇଥାଏ।

୪। ତାହାଙ୍କ ପ୍ରତି ପ୍ରୀତି ଓ ତାହାଙ୍କର ପ୍ରିୟ କାର୍ଯ୍ୟ ସାଧନ ହିଁ ତାହାଙ୍କର ଉପାସନା (ପୂଜା)।

[ମୂଳ—ବ୍ରାହ୍ମଧର୍ମ—ଦେବେନ୍ଦ୍ରନାଥ ଠାକୁର ପ୍ରଣୀତ]

---

# ବ୍ରାହ୍ମ ସମାଜର ଆଦର୍ଶ

୧। ବ୍ରାହ୍ମ ସମାଜ, ପରଦାପ୍ରଥା, ଅସ୍ପୃଶ୍ୟତା, ଜାତିଭେଦ, ମୂର୍ତ୍ତିପୂଜା, ଯୌତୁକପ୍ରଥା, ଗୁରୁବାଦ ଓ ଅବତାରବାଦରେ ବିଶ୍ୱାସ କରେନା।

୨। ବାଲ୍ୟବିବାହର ବିରୋଧ କରେ।

୩। ଅସବର୍ଣ୍ଣ ବିବାହ, ବିଧବା ବିବାହ ଓ ଏକପତ୍ନୀ ବିବାହରେ ବିଶ୍ୱାସ କରେ।

୪। ସର୍ବଧର୍ମ ସମନ୍ୱୟରେ ବିଶ୍ୱାସ କରେ।

୫। ପୁନର୍ଜନ୍ମରେ ବିଶ୍ୱାସ କରେନା।

୬। ବେଦ, ବେଦାନ୍ତ, ଉପନିଷଦ୍ ଏବଂ ପୃଥିବୀର ସମସ୍ତ ଧର୍ମଶାସ୍ତ୍ରର ସକଳ ସତ୍ୟ ଉପରେ ବିଶ୍ୱାସ ସ୍ଥାପନ କରେ।

୭। ଏହା ପ୍ରଧାନତଃ ଏକ ଉପନିଷଦ୍ ପ୍ରତିପାଦକ ଧର୍ମ।

୮। ନାରୀଶିକ୍ଷା, ମର୍ଯ୍ୟାଦା ଓ ସ୍ୱାଧୀନତାରେ ବିଶ୍ୱାସ କରେ।

୯। ଆତ୍ମାର ଅନନ୍ତ ଉନ୍ନତି ବା ମୋକ୍ଷ ନିମିତ୍ତ ଏକମାତ୍ର ବ୍ରହ୍ମୋପାସନାରେ ବିଶ୍ୱାସ କରେ।

Digitized by srujanika@gmail.com

୧୦ । ସମାଜ ବା ଧର୍ମରେ ଥିବା ସମସ୍ତ ପ୍ରକାର କୁସଂସ୍କାର, ଅନ୍ଧବିଶ୍ୱାସ ଓ ଅନ୍ଧାନୁସରଣ ଉପରେ ବିଶ୍ୱାସ କରେନା ଏବଂ ସେଗୁଡ଼ିକର ସଂସ୍କାର ଏହାର କାମ୍ୟ ।

୧୧ । ଏହା ବିଶ୍ୱ ଭ୍ରାତୃତ୍ୱରେ ବିଶ୍ୱାସ କରେ ।

୧୨ । ଅକୁଣ୍ଠ ଚିତ୍ତରେ ସତ୍ୟକଥା କହିବାରେ ବା ପ୍ରକାଶ କରିବାରେ ଭୀତ ହୁଏ ନାହିଁ ।

୧୩ । ଏକେଶ୍ୱରବାଦରେ ବିଶ୍ୱାସ କରେ ।

୧୪ । ବ୍ରାହ୍ମ "ଉପବୀତ" ଧାରଣ କରେନା ।

୧୫ । ବ୍ରାହ୍ମ ସମାଜ "ଭଲଦିନ" ଓ "ମନ୍ଦଦିନ ଦେଖିବା, "ଶୁଭକ୍ଷଣ ଓ "ଅଶୁଭକ୍ଷଣ" ମାନିବା ଏବଂ କୌଣସି କୌଣସି ନିର୍ଦ୍ଦିଷ୍ଟ ମାସରେ ଶୁଭକର୍ମ ବର୍ଜ୍ଜନ କରିବା ପ୍ରଭୃତି କୁସଂସ୍କାରେ ବିଶ୍ୱାସ କରେନା । ଜନ୍ମ ଓ ମୃତ୍ୟୁ ହେଲେ ପରିବାରର ଲୋକେ "ଅଶୁଚି" ହୁଏ, ବ୍ରାହ୍ମ ଏ ଭ୍ରାନ୍ତ ବିଶ୍ୱାସର ବଶବର୍ତ୍ତୀ ହୁଏନା ।

---

## ବ୍ରାହ୍ମଧର୍ମର ମୂଳ ବଚନ

ଏକମେବା ଦ୍ୱିତୀୟମ
ସତ୍ୟମେବ ଜୟତେ
ବ୍ରହ୍ମକୃପାହି କେବଳମ୍
ତସ୍ମିନ୍ ପ୍ରୀତି ସ୍ତସ୍ୟ ପ୍ରିୟକାର୍ଯ୍ୟ ସାଧନଞ୍ଚ
ତଦୁପାସନମେବ ।

ସୁବିଶାଳମିଦଂ ବିଶ୍ୱଂ ପବିତ୍ରଂ ବ୍ରହ୍ମମନ୍ଦିରମ୍ ।
ଚେତଃ ସୁନିର୍ମ୍ମଳଂ ତୀର୍ଥଂ, ସତ୍ୟଂ ଶାସ୍ତ୍ରମନଶ୍ୱରମ୍ ।।
ବିଶ୍ୱାସୋ! ଧର୍ମ୍ମମୂଳଂ ହି, ପ୍ରୀତିଃ ପରମ ସାଧନମ୍ ।
ସ୍ୱାର୍ଥନାଶସ୍ତୁ ବୈରାଗ୍ୟଂ ବ୍ରାହ୍ମୈରେବଂ ପ୍ରକୀର୍ତ୍ତ୍ୟତେ ।।।

---

Digitized by srujanika@gmail.com

# ମନ୍ତ୍ରୋପନିଷଦ୍

ତମୀଶ୍ୱରାଣାଂ ପରମଂ ମହେଶ୍ୱରଂ
ତଂ ଦେବତାନାଂ ପରମଞ୍ଚଦୈବତମ୍ ।
ପତିଂ ପତୀନାଂ ପରମଂ ପରସ୍ତାଦ୍
ବିଦାମ ଦେବଂ ଭୁବନେଶମୀଡ୍ୟମ୍ ॥

ହେ ଈଶ୍ୱରମାନଙ୍କର ପରମ ମହେଶ୍ୱର, ଦେବତାମାନଙ୍କର ପରମ ଦେବତା, ସକଳ ପ୍ରଭୁଙ୍କର ପ୍ରଭୁ, ଶ୍ରେଷ୍ଠ, ହିରଣ୍ୟଗର୍ଭଠାରୁ ଶ୍ରେଷ୍ଠତର, ଭୁବନେଶ୍ୱର, ହେଉ ସ୍ତୁତନୀୟ ଦେବତାଙ୍କୁ ଆମ୍ଭେମାନେ ଜାଣୁ ।

ଓଁ ଭୂର୍ଭୁବଃ ସ୍ୱଃ
ତତ୍ସବିତୁର୍ବରେଣ୍ୟଂ ଭର୍ଗୋ ଦେବସ୍ୟଧୀମହି
ଧିୟୋ ଯୋ ନଃ ପ୍ରଚୋଦୟାତ୍ ଓଁ ।୨।

ପୃଥିବୀ, ଆକାଶ ଓ ନକ୍ଷତ୍ରଲୋକ ପ୍ରସବିତା ପରମଦେବତାଙ୍କର ବରଣୀୟ ଜ୍ଞାନ ଶକ୍ତିକୁ ଧ୍ୟାନ କରୁ, ଯେ ଆମ୍ଭମାନଙ୍କୁ ସମସ୍ତ ବୁଦ୍ଧି ବୃତ୍ତି ପ୍ରେରଣ କରିଅଛନ୍ତି ।

ଓଁ ପିତା ନୋହସି, ପିତା ନୋ ବୋଧି,
ନମସ୍ତେସ୍ତୁ ମା ମାଂ ହିଂସୀଃ ।
ବିଶ୍ୱାନି ଦେବ ସବିତର୍ଦୁରିତାନି ପରାସୁବ,
ଯଦ୍‌ଭଦ୍ରଂ ତନ୍ନ ଆସୁବ ।

ନମଃ ଶମ୍ଭବାୟ ଚ ମୟୋଭବାୟ ଚ,
ନମଃ ଶଙ୍କରାୟଚ ମୟସ୍କରାୟଚ,
ନମଃ ଶିବାୟ ଚ ଶିବତରାୟଚ ।୩।

ତୁମେ ଆମ୍ଭମାନଙ୍କର ପିତା, ତୁମେ ଯେ ପିତା ହେଉ ବୋଧଶକ୍ତି ଆମ୍ଭମାନଙ୍କୁ ଦିଅ, ଆମ୍ଭମାନଙ୍କୁ ବିନାଶ କର ନାହିଁ, ତୁମ୍ଭଙ୍କୁ ନମସ୍କାର ! ହେ ଦେବ ! ହେ ପିତା ! ପାପ ସମୂହ ମାର୍ଜନା କର । ଯାହା କଲ୍ୟାଣକର, ତାହା ଆମ୍ଭମାନଙ୍କ ମଧ୍ୟରେ ପ୍ରେରଣ କର ।

Digitized by srujanika@gmail.com

ଅସତୋ ମାଂ ସଦଗମୟ,
ତମସୋ ମାଂ ଜ୍ୟୋତିର୍ଗମୟ,
ମୃତ୍ୟୋର୍ମାଂ ମୃତଂ ଗମୟ,
ଆବିରାବିର୍ମ ଏଧି,
ରୁଦ୍ର ଯତ୍ତେ ଦକ୍ଷିଣଂ ମୁଖଂ
ତେନ ମାଂ ପାହି ନିତ୍ୟମ୍
ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ ହରିଓଁ ।

ଅସତ୍ୟରୁ ଆମ୍ଭମାନଙ୍କୁ ସତ୍ୟକୁ ନେଇଯାଅ । ଅନ୍ଧକାରରୁ ଆମ୍ଭମାନଙ୍କୁ ଜ୍ୟୋତିକୁ ନେଇଯାଅ । ମୃତ୍ୟୁରୁ ଆମ୍ଭମାନଙ୍କୁ ଅମୃତକୁ ନେଇ ଯାଅ । ହେ ସ୍ୱପ୍ରକାଶ ଆମ୍ଭମାନଙ୍କ ନିକଟରେ ପ୍ରକାଶିତ ହୁଅ । ହେ ରୁଦ୍ର ! ତୁମର ଯେ ପ୍ରସନ୍ନ ମୁଖ ତାହାଦ୍ୱାରା ଆମ୍ଭମାନଙ୍କୁ ସର୍ବଦା ରକ୍ଷା କର ।

ଯତୋ ବା ଇମାନି ଭୂତାନି ଜାୟନ୍ତେ,
ଯେନ ଜାତାନି ଜୀବନ୍ତି
ଯତ୍ ପ୍ରୟନ୍ତ୍ୟଭିସଂବିଶନ୍ତି
ତଦ୍ ବିଜିଜ୍ଞାସସ୍ୱ ତଦ୍‌ବ୍ରହ୍ମ ॥

ଯାହାଙ୍କ ଠାରୁ ସମସ୍ତେ ଜନ୍ମ ହୋଇ ଅଛନ୍ତି, ଯାହାଙ୍କ ଦ୍ୱାରା ଜୀବନ ଧାରଣ କରୁଛନ୍ତି, ଯାହାଙ୍କଠାରେ ପ୍ରୟାଣ ଏବଂ ପ୍ରବେଶ କରୁଛନ୍ତି, ତାହାଙ୍କୁ ଜାଣିବାକୁ ଇଚ୍ଛା କର । ସେହି କେବଳ ବ୍ରହ୍ମ ।

ଓଁ ଯୋ ଦେବୋଽଗ୍ନୌ ଯୋଽପ୍ସୁ
ଯୋ ବିଶ୍ୱଂ ଭୁବନମାବିବେଶ,
ଯ ଓଷଧିଷୁ ଯୋ ବନସ୍ପତିଷୁ
ତସ୍ମୈ ଦେବାୟ ନମୋ ନମଃ । ୬ ।

ଯେ ଦେବତା ଅଗ୍ନିରେ, ଯେ ଜଳରେ, ଯେ ବିଶ୍ୱସଂସାରରେ ପ୍ରବିଷ୍ଟ ହୋଇ ଅଛନ୍ତି, ଯେ ଓଷଧିରେ, ଯେ ବନସ୍ପତିରେ, ସେହି ଦେବତାଙ୍କୁ ବାରମ୍ବାର ନମସ୍କାର କରୁଁ ।

Digitized by srujanika@gmail.com

ଓଁ ସତ୍ୟଂ ଜ୍ଞାନମନନ୍ତଂ ବ୍ରହ୍ମ
ଆନନ୍ଦ ରୂପମମୃତଂ ଯଦ୍‌ବିଭାତି
ଶାନ୍ତଂ ଶିବମଦ୍ୱୈତମ୍ ।

ଯେ ଆମ୍ଭମାନଙ୍କର ସ୍ରଷ୍ଟା, ପାଳନକର୍ତ୍ତା ଓ ସର୍ବସୁଖଦାତା, ଯେ ଆମ୍ଭମାନଙ୍କର ଜୀବନର ଜୀବନ ଓ ସକଳ କଲ୍ୟାଣର ଆକର, ଅମ୍ଭେମାନେ ଯାହାଙ୍କର ପ୍ରସାଦରେ ଶରୀର, ମନ, ଯାହାଙ୍କର ପ୍ରସାଦରେ ବୁଦ୍ଧି ବଳ, ଯାହାଙ୍କର ପ୍ରସାଦରେ ଜ୍ଞାନ ଓ ଧର୍ମ ଲାଭ କରିଅଛୁଁ, ଯେ ଆମ୍ଭମାନଙ୍କର ଶରୀର, ମନ ଓ ଆତ୍ମାକୁ ନାନାପ୍ରକାର ବିପଦରୁ ସର୍ବଦା ରକ୍ଷା କରୁଅଛନ୍ତି, ସେ ସତ୍ୟସ୍ୱରୂପ, ଜ୍ଞାନସ୍ୱରୂପ, ଅନନ୍ତସ୍ୱରୂପ ପରବ୍ରହ୍ମ, ଯେ ଆନନ୍ଦରୂପେ ଅମୃତରୂପେ ପ୍ରକାଶ ପାଉଅଛନ୍ତି । ହେ ଶାନ୍ତ, ମଙ୍ଗଳ, ଅଦ୍ୱିତୀୟ । ଏକାଗ୍ରଚିତ୍ତରେ ଭକ୍ତି ପ୍ରୀତିପୂର୍ବକ ସ୍ୱୀୟ ଆତ୍ମାକୁ ସେହି ଅଦ୍ୱିତୀୟ ମଙ୍ଗଳ ସ୍ୱରୂପରେ ସମର୍ପଣ କରୁଁ ।

---

## ବ୍ରହ୍ମୋପାସନା

ମାନବ ହେଉଛି ଗୋଟିଏ ଜୀବ । ସେକାରଣରୁ ତାହାର ଜ୍ଞାନ, ବୁଦ୍ଧି ବିବେକ ଆଦି ସବୁ ଶକ୍ତି ସୀମାବଦ୍ଧ ଅଟେ ।

ମାନବ ଜୀବନର ପ୍ରତ୍ୟେକ ପଦକ୍ଷେପରେ ସେ ଅନୁଭବ କରିଥାଏ ଯେ ତାହାର ଜୀବନର କର୍ତ୍ତବ୍ୟ କାର୍ଯ୍ୟ ସୁଦ୍ଧା ତାହାଲାଗି ହୋଇ ଉଠୁଛି ପୂରା ଅଜଣା । ତାହାର ଜୀବନଧାରଣର ବାଟ ଠିକ ନା ଭୁଲ ତାହା ସେ ଜାଣି ପାରେ ନାହିଁ । କେଉଁ କାର୍ଯ୍ୟ ତାହା ଲାଗି ଭଲ ତାହା ନ ବୁଝି କାମଟି କରିବା ପରେ ସେ ବୁଝେ ତାହାର ଭୁଲ ହୋଇଛି । ସେହିପରି ମାନବ ତାହାର ସୁଖର ଲୋଭ ଯୋଗୁଁ ପ୍ରତି ଦିନ ବାଟ ହୁଡ଼େ । ପରେ ହୁଏତ କରେ ଅନୁତାପ ।

ମାନବ ତାହାର ସୀମିତ ଜ୍ଞାନ, ବୁଦ୍ଧି ଓ ବିବେକ ଯୋଗୁଁ ସଦାବେଳେ ଖୋଜେ ଏକ ଠାକୁର ଅର୍ଥାତ୍ ଭଗବାନଙ୍କର ଆଶ୍ରୟ । ତାହାର ପ୍ରାର୍ଥନା—ଶିଶୁ ଯେପରି ଜ୍ୟେଷ୍ଠର ସହାୟତାରେ ବାଟ ଚାଲେ ସେହିପରି ସେ ମଧ୍ୟ ସଦାବେଳେ ପାଆନ୍ତା ଏକ ପଥ ନିର୍ଦ୍ଦେଶକ ।

Digitized by srujanika@gmail.com

ମାନବ ତାହାର ଜ୍ଞାନ ଓ ବୁଦ୍ଧି ଦ୍ୱାରା ଜାଣୁଛି ତାହାର ନିଜ ଜୀବନକୁ ବେଢ଼ି କରି ଯେତେ ଯାହା ଅଛି—ସବୁ ସୀମାଗତ । ଏ ପୃଥିବୀର ବାହାରେ, ସେ ଦେଖେ ଅସଂଖ୍ୟ (ଅସୁମାରି) ଗ୍ରହ ନକ୍ଷତ୍ର । ସେ ପୁରି ବୁଝିପାରେ, ଏକ ଅନାଦି ରହସ୍ୟ ଘୋଡ଼ାଇ ରଖିଛି ସମ୍ପୂର୍ଣ୍ଣ ସୃଷ୍ଟିକୁ ।

ମାନବ ତାହାର କ୍ଷୁଦ୍ରାତିକ୍ଷୁଦ୍ର ଅସ୍ତିତ୍ୱ ଜାଣିପାରି ଏ ଅସୀମ ସ୍ରଷ୍ଟାଙ୍କ ନିକଟରେ ଖୋଜେ ଆଶ୍ରୟ ।

ଏହିପରି ଭାବେ ସମସ୍ତ ଜଗତର ସବୁକାଳର ଲୋକେ—କଳା, ଗୋରା, ପୀତ, ଲୋହିତ ଆଦି ମଣିଷ, ବହୁ ଧର୍ମମତ ଓ ବହୁ ଠାକୁରଙ୍କର ଆଶ୍ରୟ ଖୋଜି ଆସିଛି ।

ସର୍ବଶକ୍ତିମାନ ଭଗବାନ ଏ ସମଗ୍ର ସୃଷ୍ଟିର ସ୍ରଷ୍ଟା ଓ ପାଳକ । ମୃତ୍ୟୁକୁ ମଣିଷ ବିଶ୍ୱରେ ଏକ ଧ୍ୱଂସ ଶକ୍ତି ରୂପେ । ହେଲେ, ଜନ୍ମ ଓ ମୃତ୍ୟୁ ଏକହିଁ ଶକ୍ତିର ଭିନ୍ନତରେ ରୂପ । ସେହିପରି ବିଶ୍ୱପ୍ରକୃତିର କାଳଚକ୍ର ଘଟାଉଛି ଖଣ୍ଡପ୍ରଳୟ । ପୁଣି, ଜନ୍ମ ନିଏ ଅସୁମାରି ଜୀବ ଓ ଜନ୍ତୁ ।

ଏକମାତ୍ର ପରମବ୍ରହ୍ମ ଈଶ୍ୱର ସବୁ ସୃଷ୍ଟି, ସ୍ଥିତି, ବିଳୟର କାରଣ ବୋଲି ନିଜ ନିଜ ମଧ୍ୟରେ ଧୀର ସ୍ଥିର ଭାବେ ବୁଝିଲେ—ସେ ସହଜରେ ନିଜକୁ ତାଙ୍କର ଆଶ୍ରୟରେ ରଖିଦେଇ ପାରିବ ।

ନିମ୍ନରେ ସନ୍ନିବିଷ୍ଟ ହେଲ ବ୍ରହ୍ମୋପାସନାର ଆଦର୍ଶ ଅର୍ଥାତ୍ ମଡ଼େଲ ।

ସାମାଜିକ ଉପାସନା (କେତେ ଜଣଙ୍କର ମିଳିତ ଉପାସନା)—ପ୍ରାୟଶଃ (ସାଧାରଣତଃ) ଉଦ୍‌ବୋଧନ, ଆରାଧନା ଓ ପ୍ରାର୍ଥନା ସ୍ତରର ପୂର୍ବରୁ ଗୋଟିଏ ଗୋଟିଏ ବ୍ରହ୍ମସଙ୍ଗୀତ ବୋଲଯାଏ । ସବୁର ଶେଷରେ ମଧ୍ୟ ଆଉ ଏକ ସଙ୍ଗୀତ ବୋଲଯାଏ । ତାହାହେଲେ ମୋଟରେ ଚାରିଗୋଟି ସଙ୍ଗୀତ ବୋଲାଯାଏ ।

ଉପାସନା ଲାଗି ନିରୋଳା, ଶାନ୍ତିପୂର୍ଣ୍ଣ ସ୍ଥାନ ମିଳିଲେ ମନକୁ ଭଗବତ୍ ଚିନ୍ତାରେ ବସାଇବାର ଅନୁକୂଳ ଅବସ୍ଥା ମିଳିପାରେ । ହେଲେ, ମାନବ ତାର ଜୀବନର ପ୍ରତି ପଦକ୍ଷେପରେ ବିଶ୍ୱନିୟନ୍ତା ପରମେଶ୍ୱରଙ୍କୁ ମନରେ ସବୁକଥା ନିବେଦନ କରିବାରେ କିଛି ତ ବାଧା ନାହିଁ । ଚରମ ବିପଦ ସମୟରେ ସୁଦ୍ଧା ଭଗବାନଙ୍କୁ ସ୍ମରଣ କଲେ ମାନବର ମନପାଏ—ଦମ୍ଭ ଓ ସହାୟ ।

Digitized by srujanika@gmail.com

ଉଦ୍‌ବୋଧନ—ମନକୁ ବାହାରର ଜଗତଠାରୁ ଅଲଗା କରି ବିଶ୍ୱସ୍ରଷ୍ଟା ପରମ ବ୍ରହ୍ମଙ୍କ ସହିତ ମିଶାଇବାର ଚେଷ୍ଟାକୁ କୁହାଯାଏ—ଉଦ୍‌ବୋଧନ । ମନର ଅଧିପତି ପରଂବ୍ରହ୍ମଙ୍କୁ ପୁଣି ନିଜ ମନ ମଧ୍ୟକୁ ଆବାହନ କରିବାକୁ ହେବ ।

ଆରାଧନା—ଈଶ୍ୱର ଆମ ମନରେ ଓ ସବୁଠାରେ ଅଛନ୍ତି ଏହି ଭାବକୁ ଅନୁଭବ କରି, ତାହାଙ୍କୁ ଭଜନ ଓ ସ୍ତବ କର । ତାହାଙ୍କୁ ନିଜ ମନର ଭକ୍ତି, ପ୍ରେମ ଓ କୃତଜ୍ଞତା ଜଣାଅ । ଏହି ଅଂଶକୁ ବୋଲହୁଏ—ଆରାଧନା । ବାର ବାର ଆରାଧନା ବା ସ୍ତବ କରିଲେ—ମାନବର ମନ ଓ ଆତ୍ମା ଭଗବାନଙ୍କ ସହିତ ଯୁକ୍ତ ଓ ମିଳିତ ହୋଇପାରେ । ମନ କ୍ରମେ ଈଶ୍ୱର ପ୍ରେମକୁ ଶିଖିପାରେ ।

ଧ୍ୟାନ—ପରମାତ୍ମା ଭଗବାନଙ୍କ ମଧ୍ୟରେ ନିଜର ଆତ୍ମାର ସ୍ଥାନକୁ ଅନୁଭବ କରିଲେ ତାହାଙ୍କ ପ୍ରେମ ଓ ସୀମାହୀନ ସୌନ୍ଦର୍ଯ୍ୟ ମଧ୍ୟରେ ମଣିଷ ନିଜକୁ ବୁଡ଼ାଇ ଦେଇ ପାରିବ । ଏ ପ୍ରକାର ନାମ ଧ୍ୟାନ । ଏହା ନୀରବରେ କରାଗଲେ ମଧ୍ୟ ଏହା କଥିତ ଉପାସନାର ଅଙ୍ଗ ।

ଆରାଧନା ଓ ଧ୍ୟାନ ପରେ ପରେ ଆପଣାଛାଏଁ ମଣିଷ ଈଶ୍ୱରଙ୍କ ନିକଟକୁ ପଠାଏ ତାହାର ପ୍ରାର୍ଥନା ।

ଉପାସନା ଦୁଇ ଶ୍ରେଣୀର—ଏକକ ଏବଂ ମିଳିତ । ନିଜ ମନରେ ପରମେଶ୍ୱରଙ୍କୁ ଉପାସନା ଓ ପ୍ରାର୍ଥନା କରିବା ଅବଶ୍ୟ କର୍ତ୍ତବ୍ୟ । ଏହାଛଡ଼ା ସମବିଶ୍ୱାସୀ ବା ସମଚିନ୍ତାର ମଣ୍ଡଳୀଙ୍କ ସହିତ ଏକତ୍ରିତ ଭାବେ ନୀରବ ଉପାସନା ଅବଶ୍ୟ କର୍ତ୍ତବ୍ୟ । ମିଳିତ ପ୍ରାର୍ଥନା ଦ୍ୱାରା ମଣ୍ଡଳୀଗତ ସଭ୍ୟମାନେ ନିଜ ନିଜର ନିକଟ ହେବା ଓ ସବୁ କାର୍ଯ୍ୟରେ ପରସ୍ପର ସହାୟକ ହେବା ସହଜ ହୁଏ ।

## ଉଦ୍‌ବୋଧନ

ହେ ଜଗତକାରଣ, ବିଶ୍ୱଭୁବନର ଗତି ବିଧି, ଯୁଗ ଯୁଗ ଧରି ମାନବଙ୍କୁ କରିଛି ଆଶ୍ଚର୍ଯ୍ୟ, କରିଛି ସେଥିପ୍ରତି ଆକୃଷ୍ଟ । ତଥାପି, ସେ ତାହାର ଦୈନନ୍ଦିନର ପ୍ରକୃତିକୁ ପରିତ୍ୟାଗ କରିବାକୁ କେବେହେଲେ ଭାବେ ନାହିଁ । ମଣିଷର ଜୀବନ, ଅଶେଷ ସମସ୍ୟା ଭିତରେ, ସତେ କି ଆଖି ଖୋଲିବାକୁ ଅକ୍ଷମ । ବାଧ୍ୟ ହୋଇ ସେ ତାହାର ଦେହ ଓ ମନଲାଗି ଖାଦ୍ୟ ଖୋଜି ଖୋଜି ବୁଲୁଥାଏ । ସେତେବେଳେ କଣ ସେ ତାହାଆଗର ଅସୀମ ବିଶ୍ୱକୁ ମନଦେଇ ଦେଖେ ? ନା, ମଣିଷର ଜୀବନ ପରି ତାହର ପ୍ରକୃତି ମଧ୍ୟ ନିତାନ୍ତ ସୀମାବଦ୍ଧ । ସେ ଭୁଲିଯାଏ ତାହାର ବିଶ୍ୱମାତାକୁ ।

Digitized by srujanika@gmail.com

ମଣିଷ ଯଦି ବିଶ୍ୱଭୁବନର ସୃଷ୍ଟିକର୍ତ୍ତାଙ୍କୁ ଭୁଲି ନଯାଆନ୍ତା ତେବେ ତାହାର ଅଶେଷ ସମସ୍ୟା ବିଜଡ଼ିତ ଜୀବନ ଏତେ କଷ୍ଟକର ହୁଅନ୍ତା ନାହିଁ । ମଣିଷ ନିଶ୍ଚିତ ରୂପେ ଜାଣିଛି ଅନନ୍ତ ବ୍ରହ୍ମାଣ୍ଡର ସୃଷ୍ଟିକର୍ତ୍ତାଙ୍କର ଅଶେଷ ସର୍ଜନାର ବାହାରେ କିଛି ନାହିଁ । ମାନବ ମଧ୍ୟ ବିଶ୍ୱମାତାଙ୍କର ଅତିପ୍ରିୟ ସନ୍ତାନ । ଶିଶୁ ଯେପରି ମାଆର କୋଳରେ ଥିବା ପର୍ଯ୍ୟନ୍ତ ସବୁ ଦୁଃଖ ଭୟକୁ ଭୁଲି ଯାଇପାରେ, ମାନବ ସନ୍ତାନ ମଧ୍ୟ ବିଶ୍ୱମାତାର କୋଳରେ ସବୁଭୟ ଦୂର କରିପାରେ । ଶିଶୁପରି ସେ କେବଳ ମା ମା ବୋଲି ଡାକ—କରୁ—ମାଆର ସୃଷ୍ଟିର ଗୁଣ କୀର୍ତ୍ତନ । ଯୁଗ ଯୁଗ ଧରି ସବୁ ଦେଶ ସବୁ ଧର୍ମର ଯୋଗୀ ତପସ୍ୱୀମାନେ କେବଳ ଏହି ବିଶ୍ୱମାତାଙ୍କ ଗୁଣହିଁ କୀର୍ତ୍ତନ କରିଛନ୍ତି । ଏ ସବୁ ଅମର ସଙ୍ଗୀତ ଆଜି ମଧ୍ୟ ମଣିଷକୁ ଶିଖାଉଛି ମାଙ୍କ ଚରଣ ବନ୍ଦନା କରିବାକୁ ।

ଆମେ ଯଦି ଆମର ମନକୁ ସ୍ଥିର ଭାବେ ମାତୃବନ୍ଦନାରେ ବ୍ୟାପୃତ କରୁ ତେବେ ଆମର ସବୁ ଦୁଃଖ, ସବୁ ସମସ୍ୟା, ଅଚିରେ ଉଭେଇ ଯିବାକୁ ବାଧ୍ୟ । ଆମର ବୃଥା ସନ୍ଦେହ, ଆଉ, ନିଷ୍ଫଳ ଆତ୍ମବଡ଼ିମାକୁ ନିଶ୍ଚିତ ଭାବରେ ଛାଡ଼ିବାକୁ ହେବ । ଆମର ଜୀବନର ଏକମାତ୍ର ବ୍ରତ ହେଉ ମାକୁ ଭଲପାଇ, ତାଙ୍କର ପ୍ରିୟ କାର୍ଯ୍ୟ ସାଧନ କରିବା । ଏ ପ୍ରେମ ପ୍ରୀତିର ବାଟରେ ଦେଖାଯିବ, ଆଉ ଦୁଃଖ ଭାବନା କିଛି ନାହିଁ । ବିଶ୍ୱମାତା ମଧ୍ୟ ଆମ ମନ ମଧ୍ୟରେ ତାଙ୍କର ମୋହନ-ରୂପ ସଦାବେଳେ ଜାଗ୍ରତ ରଖିଛନ୍ତି । ଆମେ ସେ ରୂପକୁ ଖୋଜିଲେଇ ତାହା ପ୍ରକାଶିତ ହେବ । ବିଶ୍ୱପ୍ରକୃତିର ଅନନ୍ତ ରହସ୍ୟ ମଣିଷକୁ ସୂଚାଇ ଦେଇଥାଏ—ବିଶ୍ୱସ୍ରଷ୍ଟାଙ୍କ ଅଶେଷ ସ୍ନେହ, ପ୍ରୀତି ଓ ପ୍ରେମ । ସେତେବେଳେ ମଧ୍ୟ ଆମେ ଆନନ୍ଦରେ ସୁଖରେ ଭାସି ତାହାଙ୍କୁ ଭୁଲିବା ନାହିଁ । ଆସନ୍ତୁ ସମସ୍ତେ ହସି ହସି ଡାକିବା ମା ଆମେ ତୁମକୁ ଭୁଲୁ ନାହୁଁ । ତୁମେ ଆମ ନିକଟରେ ଏହି ପରି ସଦା ସର୍ବଦା ରହିଥାଅ । ସୁଖ ଅଉ ଦୁଃଖ ସବୁଥିରେ ତୁମେ ଆମର ଆଶ୍ରୟ ହୁଅ ।

[ଆଶ୍ରମ-ସୂଚାଇ ଦେବେ- ସଙ୍ଗୀତ ବୋଲିବାକୁ]

## ଆରାଧନା

ସତ୍ୟମ ଜ୍ଞାନମନନ୍ତମ ବ୍ରହ୍ମ । ଆନନ୍ଦରୂପ ମମୃତମ ଯଦବିଭାତି ।
ଶାନ୍ତ ଶିବମ୍ ଅଦ୍ୱୈତମ । ଶୁଦ୍ଧମ୍ ଅପାପବିଦ୍ଧମ୍ ।

Digitized by srujanika@gmail.com

# ଆରାଧନା

ହେ ସତ୍ୟସ୍ୱରୂପ ତୁମେହିଁ ଏକମାତ୍ର ଧନ । ଏ ପୃଥିବୀରେ ଆଉ ଯେତେ ଯାହା ଦେଖୁଛୁଁ, ସେ ସବୁର ଘଟୁଛି, ରୂପାନ୍ତର ଓ ପରିବର୍ତ୍ତନ, ଏକମାତ୍ର ତୁମେହିଁ ଧ୍ରୁବସତ୍ୟ ହୋଇ, ଆମ୍ଭମାନଙ୍କର ସହାୟ ହୋଇ, ଆତ୍ମସହିତ ରହିଅଛ । ଅନ୍ୟ ପ୍ରକାର ସାହାଯ୍ୟ କେତେବେଳେ ମିଳେ, କେତେବେଳେ ମିଳେ ନାହିଁ । ଏକମାତ୍ର ତୁମେହିଁ ସ୍ଥିର ଏବଂ ନିଶ୍ଚିତ ସହାୟ । ତୁମ୍ଭେ ବନ୍ଧୁ, ତୁମ୍ଭେ ପରମ ସଖା । ସବୁ ସମୟରେ ସବୁ ଅବସ୍ଥାରେ ତୁମ୍ଭେହିଁ ଆମ୍ଭମାନଙ୍କ ନିକଟରେ ରହିଥାଅ । ତୁମ୍ଭେହିଁ ରକ୍ଷାକର୍ତ୍ତା ହୋଇ ସମସ୍ତଙ୍କୁ ରକ୍ଷାକରିଥାଅ । ତୁମ୍ଭେହିଁ ଏକମାତ୍ର ଆଶ୍ରୟ ଓ ସହାୟ ।

ତୁମ୍ଭେ ଜ୍ଞାନମୟ । ଏହି ସୀମାତୀତ ବିଶ୍ୱ ତୁମ୍ଭର ଜ୍ଞାନର ପରିଚୟ ଦେଉଛି । ତୁମ୍ଭେ ସଦାସର୍ବଦା ଚୈତନ୍ୟମୟ ରୂପରେ ସବୁଠାରେ ଉପସ୍ଥିତ ରହି, ଏହି ବିଶ୍ୱସଂସାରକୁ ପ୍ରତିପାଳନ କରୁଅଛ । ତୁମ୍ଭେ ସର୍ବଜ୍ଞ ଓ ସର୍ବଦର୍ଶୀ ରୂପେ ଆମ୍ଭମାନଙ୍କ ପ୍ରାଣମଧ୍ୟରେ ସର୍ବଦା ବିଦ୍ୟମାନ ରହି ଅଶିବ ଗୁପ୍ତକଠାରୁ—ଯେଉଁସବୁ ରୋଗ ଅଥବା ବିପଦର ଅସ୍ତିତ୍ୱ ସୁଦ୍ଧା ଆମ୍ଭର ଅଜଣା—ସେହି ସବୁର ଗ୍ରାସରୁ ଆମ୍ଭମାନଙ୍କୁ ରକ୍ଷା କରୁଅଛ । ତୁମ୍ଭ ଦୃଷ୍ଟିର ଅଗୋଚର କିଛିମାତ୍ର ନାହିଁ କି ରହିପାରେ ନାହିଁ । ତୁମ୍ଭେ ପ୍ରତି ମୁହୂର୍ତ୍ତରେ ସବୁର ଅବସ୍ଥା ଜାଣୁଛ । କେଉଁଠାରେ କେଉଁ କୀଟାଣୁକୀଟ ଏବଂ କେଉଁଠି କେଉଁ ବୃହତ୍ ପ୍ରାଣୀ କେଉଁ ଅବସ୍ଥାରେ ରହିଛି, ସେ ସମସ୍ତ ତୁମ୍ଭେହିଁ ତୁମ୍ଭେ ଜାଣିଅଛ । ହେ, ଜ୍ଞାନମୟ ପରମେଶ୍ୱର ତୁମ୍ଭେ ସଦା-କ୍ରିୟାଶୀଳ ରୂପେ ଜଗତର ସବୁ କାର୍ଯ୍ୟର ଚାଳକ ହୋଇ ବିଦ୍ୟମାନ ରହିଛ । ତୁମ୍ଭର ଶୁଭଦୃଷ୍ଟି ଆମ୍ଭମାନଙ୍କୁ ସଦାସର୍ବଦା ଶାସନ କରୁଛି । ତୁମ୍ଭେ ଶାସନକର୍ତ୍ତା ପୁଣି ସଂଶୋଧନ କର୍ତ୍ତା । ତୁମ୍ଭେ ସଦା-ଜାଗ୍ରତ ଏବଂ ସର୍ବଦା ଆମ୍ଭମାନଙ୍କର ରକ୍ଷାକର୍ତ୍ତା ।

ତୁମ୍ଭେ ଅନାଦି ଅନନ୍ତ । ଆମ୍ଭେ ତୁମ୍ଭର କଣ ଅବା ବୁଝି ପାରିବା । ଆମ୍ଭମାନଙ୍କ ଚତୁର୍ଦ୍ଦିଗରେ ସୀମିତ ଯେତେ ଯାହା ଦେଖୁଛୁଁ, ସେ ସବୁର ମଧ୍ୟର ତତ୍ତ୍ୱ କଣ ବୋଲି ବୁଝିପାରୁ ନାହୁଁ, ତୁମ୍ଭ ତତ୍ତ୍ୱ ଆମ୍ଭେ କିପରି ବୁଝି ପାରିବା ? ତୁମ୍ଭେ ମହାନ୍ । ସୃଷ୍ଟିମଧ୍ୟରେ ଯାହାର ଯେଉଁ ପ୍ରକାର ଶକ୍ତି ରହିଛି, ସେ ତାହାର ଦ୍ୱାରା ତୁମ୍ଭର ମହିମା ପ୍ରକାଶିତ କରୁଛି । ହେଲେ, ତୁମ୍ଭର ଅନ୍ତ ତ' କେବେହେଲେ ଘଟେନା । "ଅନ୍ତ ନାହିଁ, ଅନ୍ତ ନାହିଁ ଏହାହିଁ ସଭିଙ୍କୁ କହିବାକୁ ହେଉଛି । ହେ ପ୍ରଭୁ, ତୁମ୍ଭର ଯଦି ଅନ୍ତ ଆମେ ନ ପାଉ, ତେବେ କ୍ଷତି ବା କଣ ? ତୁମ୍ଭକୁ ଜାଣିବା ମଧ୍ୟ ଦେଇ ଆମ୍ଭେମାନେ ବର୍ଦ୍ଧିତ ହେଉଥିବୁଁ । ତୁମ୍ଭ ମଧ୍ୟସେହିଁ ଆମ୍ଭର ଉନ୍ନତି

Digitized by srujanika@gmail.com

ଘଟିବ । ତୁମ୍ଭର ଅନନ୍ତ ପ୍ରେମର ଆଶ୍ରୟ ମଧ୍ୟରେ ଯେ ଅମ୍ଭେ ରହିଛୁଁ ସେହିଥିରେ ଆମ୍ଭର ପରମ ଆରାମ ଓ ଶାନ୍ତି ।

ତୁମ୍ଭେ ଆନନ୍ଦମୟ । ଏହି ଦୁଃଖ ଶୋକ ପୂର୍ଣ୍ଣ ସଂସାରରେ, ଆମ୍ଭେ ଯେ ବନ୍ଧୁ ଓ ପରିବାର ମଧ୍ୟରେ ରହି ସୁଖୀ ହେଉ—ତାହା ତୁମ୍ଭର ଆଶୀର୍ବାଦରେ । ତୁମ୍ଭେ ରସସ୍ୱରୂପ ତୃପ୍ତିର କାରଣ ହୋଇ ସମସ୍ତଙ୍କ ପ୍ରାଣମଧ୍ୟରେ ରହିଛ ବୋଲି, ସେମାନଙ୍କର ସଙ୍ଗ ଏତେ ମଧୁର ହୋଇ ଉଠେ । ଏହି କାରଣରୁ ସଂସାରଟା ଅମ ନିବାସର ଉପଯୁକ୍ତ ସ୍ଥାନ ହୋଇ ରହିଛି । ହେ ଅମୃତମୟ, ଏକମାତ୍ର ତୁମ୍ଭ ମଧ୍ୟରେହିଁ ତୃପ୍ତି ଓ ଆରାମ । ମଣିଷ ଚିରଦିନ ସଂସାରରେ ଜୀଇବାକୁ ସୃଜିତ ହୋଇ ନାହିଁ । ସେ ଅମୃତର ଅଧିକାରୀ । ଅମୃତ ରୂପଧର ତୁମ୍ଭେ ସଭିଙ୍କ ଆତ୍ମା ମଧ୍ୟରେ ରହିଛ । ସେ କାରଣରୁ କାହାର ମୃତ୍ୟୁ ନାହିଁ । ମୃତ୍ୟୁ ନିକଟରୁ ତୁମ୍ଭେହିଁ ସମସ୍ତଙ୍କୁ ରକ୍ଷା କରିଅଛ । ତୁମ୍ଭେହିଁ ପ୍ରାଣର ଶାନ୍ତି ସ୍ୱରୂପ । ତୁମ୍ଭର ଆସ୍ୱାଦନ ଲାଭ କଲେ ମଣିଷ ତାହା ଭୁଲି ପାରେ ନାହିଁ ।

ହେ ଦୟାମୟ, ହେ ପ୍ରେମମୟ, ତୁମ୍ଭର ଦୟା ଅପାର, ପ୍ରେମ ଅତୁଳ । ଦୟାବନ୍ତ ତୁମ୍ଭେହିଁ ଆମ୍ଭମାନଙ୍କୁ ତୁମ୍ଭର ଅମୃତମୟ ସହବାସରେ ରହିବାକୁ ଅଧିକାରୀ କରିଅଛ । ଆମ୍ଭେମାନେ ଅତି କ୍ଷୁଦ୍ର ହେଲେ ସୁଦ୍ଧା ଯେ ତୁମ୍ଭ ନିକଟରେ ବସିପାରୁଁ—ତାହା ଏକମାତ୍ର ତୁମ୍ଭର ଅପାର ଦୟା ଯୋଗୁଁ । ଆମ୍ଭର କିବା ଶକ୍ତି ଅଛି ଯେ ଆମ୍ଭେ ତୁମ୍ଭ ପୂଜା କରି ପାରିବୁ ! ପ୍ରଭୁ ! କେତେ କେତେ ସମୟରେ ଆମ୍ଭେ ତୁମ୍ଭ ଆଡ଼କୁ ନ ଯାଇ, ଓଲଟି, ବିପରୀତ ଦିଗକୁ ଧାଇଁ ଯାଉ । କିନ୍ତୁ, ତୁମ୍ଭେ ଦୟାକରି ଆମ୍ଭକୁ ତୁମ୍ଭର ଆଡ଼କୁ ନେଇ ଯାଅ । ଏପରି ଆଉ କିଏ ଅଛି ଯିଏ ବିରୋଧୀ ଆମ୍ଭଙ୍କ ନିକଟକୁ ନେଇ ପ୍ରେମଦାନ କରେ ଓ କଲ୍ୟାଣ କରେ ? ତୁମ୍ଭେ ଆମ୍ଭମାନଙ୍କ ନିକଟରୁ ସଦାସର୍ବଦା ବିରୁଦ୍ଧାଚରଣ ଓ ଉପେକ୍ଷା ପାଉଛ, କିନ୍ତୁ, ଆମ୍ଭେ ତ' କେବେହେଲେ ତୁମ୍ଭଠାରୁ ବିରାଗଭାବ ପାଇଲୁ ନାହିଁ । ଏକମାତ୍ର ତୁମ୍ଭର ଏ ଦୟାଯୋଗୁଁ ଆମ୍ଭେ ତୁମ୍ଭ ଆଡ଼କୁ ଯିବାକୁ ବ୍ୟାକୁଳ ହେଉଁ ।

ଅଦ୍ୱିତୀୟ ମହାନ ପ୍ରଭୁ ତୁମ୍ଭେ । ତୁମ୍ଭେହିଁ ଆମ୍ଭର ସ୍ରଷ୍ଟା ଏବଂ ପାଳନକର୍ତ୍ତା । ସମଗ୍ର ସଂସାରଟା ତୁମ୍ଭର ସୃଜନା, ତୁମ୍ଭର ରାଜ୍ୟ; ଆମ୍ଭର ଅନ୍ୟ କେହି ପ୍ରଭୁନାହିଁ । ଆମ୍ଭର ଆଶ୍ରୟ ଓ ସମ୍ବଳ ଏକମାତ୍ର ତୁମ୍ଭେ । ଇହ ପରକାଳରେ ତୁମ୍ଭକୁ ଛାଡ଼ି ଆମ୍ଭର ଅନ୍ୟଗତି ନାହିଁ । ଆମ୍ଭ ପ୍ରାଣର ଦୁଃଖ ବୁଝିବାକୁ ଆଉ କେହିନାହିଁ । ଦୁଃଖ-ଦୂର କରିବାର ଶକ୍ତିମଧ୍ୟ ଅନ୍ୟ କାହାର ନାହିଁ । ତୁମ୍ଭେହିଁ ସର୍ବମୟ, ମଙ୍ଗଳମୟ ବିଧାତା । ସମଗ୍ର ବ୍ରହ୍ମାଣ୍ଡ ତୁମ୍ଭର ମହିମା ପ୍ରଚାର କରୁଛି, ତୁମ୍ଭର ରାଜତ୍ୱ ସର୍ବବ୍ୟାପୀ ।

Digitized by srujanika@gmail.com

ତୁମ୍ଭ ସଦୃଶ ଅପର କେହି ନାହିଁ । କାହାର ନିକଟରୁ ସାହାଯ୍ୟ ତୁମ୍ଭର ଲୋଡ଼ା ନାହିଁ । ତୁମ୍ଭେହିଁ ଏକମେବାଦ୍ୱିତୀୟମ୍ ।

ପବିତ୍ରସ୍ୱରୂପ ପରମେଶ୍ୱର ତୁମ୍ଭେ । ତୁମ୍ଭ ସହବାସର ଆସ୍ୱାଦପାଇ ପାପୀର ପାପଜୀବନ ପରିବର୍ତ୍ତିତ ହୋଇ ଯାଏ । ପାପୀର ଉଦ୍ଧାର ଲାଭର ଅନ୍ୟ ଦ୍ୱିତୀୟ ପନ୍ଥା ନାହିଁ । ହେ ପରମସୁନ୍ଦର ପରମେଶ୍ୱର, ତୁମ୍ଭେ ଯଦି କୃପାକରି ତୁମ୍ଭର ଅତୁଳନୀୟ ଶୋଭାରାଶିର କଣାଏ ମାତ୍ର--ପାପୀକୁ ନ ଦେଖାଅ ତେବେ ପାପୀଜନ କି ଭରସାପାଇ ପାପପଥ ଛାଡ଼ିବ ? ହେ ଚିରସୁନ୍ଦର, ତୁମ୍ଭର ସୌନ୍ଦର୍ଯ୍ୟ ଯଦି ପ୍ରାଣରେ ଅନୁଭୂତ ହୁଏ ତେବେ ଆଉ ଦୁଃଖ କଣ ରହି ପାରେ ? ଏ ଧରାର ସମସ୍ତ ଶୋଭା ଗୋଟାଏ ପଟେ ପଡ଼ି ରହେ, ଆଉ, ତୁମ୍ଭର ସେହି ଅସୀମ ସୌନ୍ଦର୍ଯ୍ୟର ମାତ୍ର ଏକ କଣାର ଲୋଭରେ ତୁମ୍ଭର ଭକ୍ତସନ୍ତାନ ପାଗଳ ହୋଇ ବୁଲି ବୁଲେ । ଆମ୍ଭମାନଙ୍କର ଉଦ୍ଧାର କର୍ତ୍ତା ତୁମ୍ଭେ । ପାପ ତୁମ୍ଭକୁ ସ୍ପର୍ଶସୁଦ୍ଧା କରିପାରେ ନାହିଁ । ତୁମ୍ଭେ ଅପାପବିଦ୍ଧ ନିଷ୍କଳଙ୍କ । ହେ ପରମ ସୌନ୍ଦର୍ଯ୍ୟର ଆଧାର ତୁମ୍ଭେହିଁ ଆମ୍ଭର ଆଶାଭରସା, ଇହ-ପରକାଳର ସମ୍ବଳ ଓ ଆଶ୍ରୟ । ଆମ୍ଭର ଏହିପରି ଆଉ କିଏ ଅଛି ଯିଏ ପାପୀ ବୋଲି ଘୃଣା ନ କରି ଆମ୍ଭର ଉଦ୍ଧାର ସାଧନ କରେ ? ପ୍ରଭୁ, ତୁମ୍ଭଛଡ଼ା ଆମ୍ଭର ଆଉ ଅନ୍ୟଗତି ନାହିଁ । ଆମ୍ଭେମାନେ ତୁମ୍ଭର ଶରଣାପନ୍ନ ହେଉଁ । ତୁମ୍ଭକୁ ବାରମ୍ବାର ପ୍ରଣାମ ଜଣାଉଁ ।

[ ଆରାଧନାପରେ ପ୍ରାର୍ଥନାମଣ୍ଡଳୀର ସମସ୍ତେ ନିସ୍ତବ୍ଧଭାବେ ଧ୍ୟାନ କରିବା ପରେ, ନିମ୍ନର ପ୍ରାର୍ଥନା ସମସ୍ୱରରେ ବୋଲିବେ ]

ଅସତ୍ୟରୁ ଆମ୍ଭମାନଙ୍କୁ ସତ୍ୟକୁ ନେଇଯାଅ
ଅନ୍ଧକାରରୁ ଆମ୍ଭମାନଙ୍କୁ ଜ୍ୟୋତିକୁ ନେଇଯାଅ
ମୃତ୍ୟୁଠାରୁ ଆମ୍ଭମାନଙ୍କୁ ଅମୃତକୁ ନେଇଯାଅ
ହେ, ସତ୍ୟସ୍ୱରୂପ ଆମ୍ଭନିକଟରେ ପ୍ରକାଶିତ ହୁଅ
ଦୟାମୟ, ତୁମ୍ଭର ଯେଉଁ ଅପାର କରୁଣା
ତାହାଦ୍ୱାରା ଆମ୍ଭମାନଙ୍କୁ ସର୍ବଦା ରକ୍ଷା କର ।

[ ଗୋଟିଏ ସଙ୍ଗୀତ ବୋଲାଯିବ । ତତ୍ପରେ, ଆଚାର୍ଯ୍ୟମହାଶୟ କୌଣସି ଧର୍ମଗ୍ରନ୍ଥରୁ କିଛି ପାଠକରି ସେହି ଭାବାନୁସାରେ, ଅଥବା ନିଜ ମନରୁ ଆଧ୍ୟାତ୍ମିକ ଉନ୍ନତିଲାଭ ନିମନ୍ତେ---ଉପସ୍ଥିତ ମଣ୍ଡଳୀକୁ ଉପଦେଶ ଦେଇପାରନ୍ତି ।

ଉପଦେଶ ଦାନ ପରେ ବିଭିନ୍ନ ସମସ୍ୟାନୁଗ ପ୍ରାର୍ଥନା କରାଯିବ । ସର୍ବଶେଷରେ ଏକ ସଙ୍ଗୀତ ବୋଲାଯିବ । ]

× × ×

Digitized by srujanika@gmail.com

ପ୍ରତ୍ୟେକ ମଣିଷର ଜୀବନରେ ଅନେ ବିଭିନ୍ନ ପ୍ରକାର ଘଟଣା । କେଉଁଗୋଟିକି ତାକୁ ଯଥେ ଅଧିକ ଖୁସୀ କରିପାରେ, ପୁଣି କେଉଁ ଘଟଣା ତାହାକୁ ପ୍ରବଳ ଦୁଃଖ ଆଣିଦିଏ । ଲୋକେ ନିଜ ନିଜ ପରିବାର ଜ୍ଞାତି ଓ ସମାନ ଧର୍ମବିଶ୍ୱାସୀ ବନ୍ଧୁଙ୍କ ସହିତ ମିଶି ବାସ କରନ୍ତି । ଏହାକୁହିଁ କୁହାଯାଏ ତାହାର ସମାଜ । ବ୍ରାହ୍ମଧର୍ମ ବିଶ୍ୱାସୀ ନରନାରୀ ଜୀବନର ପ୍ରତ୍ୟେକ ଅବସ୍ଥାରେ ବିଶ୍ୱସ୍ରଷ୍ଟା ଈଶ୍ୱରଙ୍କ ନିକଟରେ ନିଜର ଓ ପରିବାରର ସୁଖ ଦୁଃଖରୁ ଜାତ ସବୁଭାବକୁ ନିବେଦନ କରି ତାହାଙ୍କଠାରେ ଜଣାଏ ଜୀବନର ପଥ ନିର୍ଦ୍ଦେଶ ଲାଗି ପ୍ରାର୍ଥନା ।

ମଣିଷର ପାରିବାରିକ ଓ ସାମାଜିକ ଜୀବନରେ ସାଧାରଣତଃ ଘଟୁଥିବା ଘଟଣା ଉପଲକ୍ଷରେ ଯେଉଁ ପ୍ରକାର ଉପାସନା କରାଯାଏ ନିମ୍ନରେ ତାହାର କିଛି କିଛି ସୂଚନା ଦିଆ ଯାଉଛି ।

## ସନ୍ତାନ ଜନ୍ମ

ତାଙ୍କର ଗୋଟିଏ ପିଲା ଜନ୍ମ ହେଲେ ପିତା, ମାତା ଓ ପରିବାରର ସମସ୍ତେ ଈଶ୍ୱରଙ୍କ ନିକଟରେ ଏହି ଶିଶୁଟି ତାଙ୍କର ଆଶୀର୍ବାଦ ବୋଲି କୃତଜ୍ଞତା ଜଣାଇବା ଅତି ସ୍ୱାଭାବିକ କଥା ।

ପିତା ମାତା ଅତି ବିନୀତ ହୋଇ ପ୍ରାର୍ଥନା ନିବେଦନ କରିଥାଆନ୍ତି—"ହେ ବିଶ୍ୱଜନନୀ, ଏହି ବିଶ୍ୱର ପାଳନକର୍ତ୍ତ୍ରୀ ତୁମ୍ଭେ ଆମ୍ଭକୁ ଦେଇଥିବା ଏ ସୁନ୍ଦର ଶିଶୁଟି ତୁମ୍ଭର କୃପାର ଚିହ୍ନ ।

ଆଜି ଆମେ ସମସ୍ତେ ମିଶି ଏ ଶିଶୁର ଉତ୍ତମ ଜୀବନ ଲାଗି ପ୍ରାର୍ଥନା ଜଣାଉଛୁ । ହେ ଜଗତ ଜନନୀ ତୁମ୍ଭେ ଆଶୀର୍ବାଦ କର ଯେପରି ଏ ଶିଶୁଟି ତାର ଜୀବନର ସବୁ କ୍ଷେତ୍ରରେ ତୁମ୍ଭର ମହିମାଗାନ କରି କରି ଚାଲିପାରେ । ଆମ୍ଭେମାନେ ଯେପରି ତାହାକୁ ସତ୍‌ବାଟରେ ପାଳନ କରି ପାରିବୁ ତୁମ୍ଭେ ଆମକୁ ସେହିଭଳି ଆଶୀର୍ବାଦ କର ।

ସନ୍ତାନଟି ପାଇ ଆମେ ଯେଉଁ ଅସୀମ ଆନନ୍ଦ ଲାଭ କରିଛୁଁ ସେଥିଲାଗି ତୁମ୍ଭଙ୍କୁ ଆମ୍ଭମାନଙ୍କର ପ୍ରଣାମ ନିବେଦନ କରୁଛୁଁ ।"

## ଜାତକର୍ମ

ସନ୍ତାନ ଜନ୍ମପରେ ତାହାର ମାତାର ସ୍ୱାଭାବିକ ଶକ୍ତି ଫେରି ଆସିବାକୁ କେତେକ ସପ୍ତାହ ସମୟ ଲାଗେ । ସେ କାରଣରୁ—ସାଧାରଣତଃ ସନ୍ତାନ ଜନ୍ମର ଏକମାସ ପୂରିଲେ—ପରିବାରର ସମସ୍ତେ ମା ଓ ଶିଶୁସହ ମିଶି ତାହାର ଜାତକର୍ମ ଅନୁଷ୍ଠାନ ପାଳନ କରିଥାଆନ୍ତି ।

Digitized by srujanika@gmail.com

ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା ଜଣାଇବେ—"ଜଗତଜନନୀ ଏ ବିଶ୍ୱସଂସାରକୁ ତୁମ୍ଭେହିଁ ପ୍ରାଣଦାନ କର । ଏହି ଶିଶୁଟିକୁ ତାହାର ମାତାର ଗର୍ଭରେ ତୁମ୍ଭେହିଁ ପାଳନ କରିଛ । ଶିଶୁଟିର ଜନ୍ମପରେ, ହେ ଜଗତସ୍ରଷ୍ଟା ତୁମ୍ଭର ଆଲୋକ, ଜଳବାୟୁ ଆଦି ତାହାକୁ ବଞ୍ଚାଇ ରଖିବ । ହେ ମାତା ଆଶୀର୍ବାଦ କର,—ଏହିଶିଶୁ ଓ ଆମ୍ଭେ ସମସ୍ତେ ତୁମ୍ଭର ଜ୍ଞାନ, ପ୍ରେମ ଓ ପୁଣ୍ୟପଥ ଲାଭ କରି ତାହାକୁ ମନୁଷ୍ୟ ରୂପେ ଗଢି ପାରିବୁଁ ।

ଏହି ଶିଶୁର ସୁସ୍ଥ ଓ ଦୀର୍ଘଜୀବନ ତୁମ୍ଭେହିଁ ଦେଇପାର । ଏହି ଶିଶୁଲାଗି ଆମ୍ଭେମାନେ ତାହାହିଁ ପ୍ରାର୍ଥନା କରୁଛୁଁ ।

ହେ ଜଗତଜନନୀ ତୁମ୍ଭର ଆଶୀର୍ବାଦ ନ ପାଇଲେ ଏ ଶିଶୁର କିଛି ହେଲେ କରିବାର ଶକ୍ତି ତାହାର ପିତା ମାତା ଓ ଗୁରୁଜନଙ୍କର ନାହିଁ । ଆମ୍ଭେମାନେ ଜୀବନର ପ୍ରତି ପଦରେ ଯେପରି ତୁମ୍ଭର ଦୟା ଭୁଲି ନ ଯାଉଁ—ତାହାହିଁ ପ୍ରାର୍ଥନା କରୁଛୁଁ ।"

## ନାମକରଣ (ନାଁ-ଦିଆ) ଓ ଅନ୍ନପ୍ରାଶନ

ଜନ୍ମପରେ, ଶିଶୁର ଯେତେବେଳେ ପ୍ରଥମ ଦାନ୍ତ ଉଠେ, ସେତେବେଳେ, ତାହାର ପିତାମାତା ଜାଣି ପାରନ୍ତି ଯେ ଶିଶୁର ଏଣିକି ଅନ୍ନଭୋଗ ଦରକାର ହେଲାଣି । ସେହି ଉପଲକ୍ଷରେ ଜଗତ ଜନନୀଙ୍କ ନିକଟରେ ଉପାସନା କରାଯାଏ । ଶିଶୁକୁ ଅନ୍ନ-ଦାନ (ଖିରୀଖିଆ) ସହିତ ତାହାର ନାମ ମଧ୍ୟ ଦିଆଯାଏ ।

ପରିବାରର ଲୋକେ ଓ ବନ୍ଧୁବାନ୍ଧବ ଶିଶୁଟିକୁ ସଙ୍ଗରେଧରି ଜଗତଜନନୀଙ୍କ ନିକଟରେ ପ୍ରାର୍ଥନା କରନ୍ତି ।

"ହେ ଜୀବନଦାତା—ତୁମ୍ଭେହିଁ ଆମ୍ଭର ପିତାମାତା । ତୁମ୍ଭେହିଁ ଆମ୍ଭମାନଙ୍କୁ ପାଳନ କରୁଛ । ଆମ୍ଭର ଏ ଶିଶୁର ପ୍ରଥମ ଅନ୍ନଗ୍ରହଣ ଓ ନାମକରଣ ଅବସରରେ ଆମ୍ଭେମାନେ ତୁମ୍ଭନିକଟରେ ତାହାର ସର୍ବଶୁଭ ଲାଗି ପ୍ରାର୍ଥନା ଜଣାଉଛୁଁ ।

ହେ ବିଶ୍ୱସ୍ରଷ୍ଟା, ତୁମ୍ଭର ସୃଷ୍ଟିରେ ରହସ୍ୟ ଆମ୍ଭେ କ୍ଷୁଦ୍ରମାନବ କଣ ଅବା ବୁଝୁ । ତେବେ, ଏହି ଶିଶୁଟି ଆସି ଆମ ମନରେ ଯେଉଁ ଆଶା ଓ ଆନନ୍ଦ ଦେଇଛି ତାହାହିଁ ଆମକୁ ଇଙ୍ଗିତ ଦେଉଛି—ତୁମ ମହିମାର ଆଦି ନାହିଁ କି ଅନ୍ତ ନାହିଁ । ଏହି ଶିଶୁହିଁ ଆମ୍ଭ ଜୀବନତରୁର ଶ୍ରେଷ୍ଠ ଫୁଲ । ଆମ୍ଭେ ଆଶାପୋଷଣ କରୁ ଯେ ଆମ୍ଭମାନଙ୍କ ପରିବାରକୁ ତୁମ୍ଭର ଦୟାରେ ଆମେ କରିପାରିବୁ ତୁମର ପୂଜାସ୍ଥଳୀ । ଏହି ଶିଶୁକୁ ମଧ୍ୟ ଆମ୍ଭେମାନେ ତୁମ୍ଭର ଦୟାରେ କରିପାରିବୁ ତୁମର ପୂଜକ ।

ମନୁଷ୍ୟ ସମାଜର ଧାରାଧରି ଶିଶୁଟିକୁ ଗୋଟିଏ ନାମ ଆମ୍ଭେ ଦେଉଛୁଁ । ହେ ଜଗତପତି, ଆଶୀର୍ବାଦ କର ଯେପରି ଏହି ନାମ ଧରି, ଏ ଶିଶୁ, ତୁମର ନାମ ଗାନ କରି କରି ତାହାର ନିଜ ଜୀବନ ମଧ୍ୟ ଶୁଦ୍ଧ ଓ ପବିତ୍ର କରିପାରିବ ।

Digitized by srujanika@gmail.com

ଏହି ଶିଶୁର ପିତାମାତାଙ୍କର ମନ ଆଜି ଆନନ୍ଦରେ ପୂର୍ଣ୍ଣ । ହେଲେ, ଅପର-ଦିଗରେ, ଏ ଶିଶୁକୁ ସତ ମଣିଷ ରୂପେ ଗଢିବାର ଦାୟିତ୍ଵ ଯେ କେତେ ବିରାଟ ତାହା ମଧ୍ୟ ସେମାନେ ସଦାସର୍ବଦା ବିଚାର କରୁଅଛନ୍ତି । ପ୍ରଭୁ, ତୁମ୍ଭର ଆଶୀର୍ବାଦ ନ ଥିଲେ ଶିଶୁର ପିତାମାତା କେଉଁଭଳି ତାଙ୍କର ଦାୟିତ୍ଵ ପାଳନ କରିବେ ? ଆମ୍ଭେମାନେ ଏ ଶିଶୁକୁ ଉପଯୁକ୍ତଭାବେ ଲାଳନ ପାଳନ କରିବାରେ ତୁମ୍ଭର ଆଶୀର୍ବାଦ ପ୍ରାର୍ଥନା କରୁଛୁଁ ।

ଏହି ପବିତ୍ର ଶିଶୁଟିକୁ ଆମ୍ଭମାନଙ୍କୁ ଦେଇଥିବାରୁ ପୁଣିଥରେ ତୁମ୍ଭ ନିକଟରେ କୃତଜ୍ଞତା ନିବେଦନ କରୁଛୁଁ ।"

## ଜନ୍ମଦିନ ବା ଜନ୍ମ ଜୟନ୍ତୀ

ପିଲାଠାରୁ ଆରମ୍ଭକରି ବୟସ୍କଲୋକଙ୍କର ମଧ୍ୟ, ପ୍ରତି ବର୍ଷ ଜନ୍ମଦିନ ବା ଜୟନ୍ତୀ ପାଳନ କରାଯାଏ । ଏହି ଦିନଟି ପରିବାର ଲାଗି ଏକ ଉତ୍ସବ ଦିନ । ସେହି ଉତ୍ସବ ପାଳନ ସମୟରେ ବ୍ରାହ୍ମଧର୍ମ ବିଶ୍ଵାସୀ, ଅବଶ୍ୟ ଈଶ୍ଵରଙ୍କ ନିକଟରେ ତାହାର ଓ ପରିବାରର ମିଳିତ ଉପାସନା ନିବେଦନ କରେ, ।

ସାନପିଲାର ଶୈଶବକାଳର, [ପୁଅ ଝିଅ, ସମସ୍ତେ] ଜନ୍ମଦିନରେ ଜଗତପତିଙ୍କ ନିକଟରେ ନିଜକୁ ନିବେଦନ କଲେ ଯାବଜ୍ଜୀବନ ସେହି ବାଟରେ ଚାଲିବାକୁ ଅଭ୍ୟସ୍ତ ହୋଇପାରନ୍ତି ।

ଜନ୍ମଦିନର ଉପାସନାରେ ମଧ୍ୟ ଅନ୍ନପ୍ରାଶନର ଉପସନା ତୁଲ୍ୟ ପ୍ରାର୍ଥନା କରାଯାଏ । ଏହି ଉପାସନା ଅବସରରେ ବିଶେଷ ସଙ୍ଗୀତ ବୋଲାଯାଇ ପାରେ ।

## ମୃତ୍ୟୁବାର୍ଷିକୀ ବା ବାର୍ଷିକ ଶ୍ରାଦ୍ଧ

ପ୍ରତ୍ୟେକ ପରିବାରରେ ତାହାର ପୂର୍ବାଗ୍ରଜ ଅଥବା ମୃତ ପ୍ରିୟଜନମାନଙ୍କର ମୃତ୍ୟୁ ଦିବସରେ ଈଶ୍ଵରଙ୍କ ନିକଟରେ ଉପାସନା କରାଯାଏ । ସେହି ମୃତବ୍ୟକ୍ତିର ସଦ୍‌ଗୁଣ ଓ ପ୍ରିୟସ୍ମୃତି ସ୍ମରଣ ଓ ଈଶ୍ଵରଙ୍କ ପାଖରେ ପ୍ରାର୍ଥନା କରିବାକୁ ହୁଏ । କବିଙ୍କଭାଷାରେ କହିଲେ—"ତୋର ମଙ୍ଗଳ ବିଧାନ; କରିଅଛୁ ମରଣକୁ ଅମୃତ ସୋପାନ" ଏହିପରିଭାବେ ଈଶ୍ଵର ବିଶ୍ଵାସୀମାନେ ଅନାସକ୍ତ ଜୀବନରେ ଅଭ୍ୟସ୍ତ ହୁଅନ୍ତି ।

---

Digitized by srujanika@gmail.com

# ବ୍ରହ୍ମସଙ୍ଗୀତ

## ସ୍ତୋତ୍ର

ଓଁ ନମସ୍ତେ ସତେ ତେ ଜଗତ୍କାରଣାୟ
ନମସ୍ତେ ଚିତେ ସର୍ବଲୋକାଶ୍ରୟାୟ ।
ନମୋଽଦ୍ୱୈତ ତତ୍ତ୍ୱାୟ ମୁକ୍ତି ପ୍ରଦାୟ
ନମୋ ବ୍ରହ୍ମଣେ ବ୍ୟାପିନେ ଶାଶ୍ୱତାୟ ॥
ତ୍ୱମେକଂ ଶରଣ୍ୟଂ ତ୍ୱମେକଂ ବରେଣ୍ୟଂ
ତ୍ୱମେକଂ ଜଗତପାଳକଂ ସ୍ୱପ୍ରକାଶମ୍
ତ୍ୱମେକଂ ଜଗତ୍କର୍ତ୍ତୃ-ପାତୃ-ପ୍ରହର୍ତ୍ତୃ
ତ୍ୱମେକଂ ପରଂ ନିଶ୍ଚଳଂ ନିର୍ବିକଳ୍ପମ୍ ॥
ଭୟାନାଂ ଭୟଂ ଭୀଷଣଂ ଭୀଷଣାନାଂ
ଗତିଃ ପ୍ରାଣିନାଂ ପାବନଂ ପାବନାନାମ୍ ।
ମହୋଚ୍ଚୈଃ ପଦାନାଂ ନିୟନ୍ତୃ ତ୍ୱମେକଂ
ପରେଷାଂ ପରଂ ରକ୍ଷଣଂ ରକ୍ଷଣାନାମ ।
ବୟସ୍ତ୍ୱାଂ ଜଗତ୍ ସାକ୍ଷିରୂପଂ ନମାମଃ ।
ସଦେକଂ ନିଧାନଂ ନିରାଲମ୍ବମୀଶଂ
ଭବାମ୍ଭୋଧି-ପୋତଂ ଶରଣ୍ୟଂ ବ୍ରଜାମଃ ॥

ତୁମେ ସତ୍ୟସ୍ୱରୂପ ଓ ଜଗତର କାରଣ, ଏବଂ ଜ୍ଞାନସ୍ୱରୂପ ଓ ସମସ୍ତଙ୍କର ଆଶ୍ରୟ, ତୁମକୁ ନମସ୍କାର । ତୁମେ ମୁକ୍ତିଦାତା, ଅଦ୍ୱିତୀୟ, ନିତ୍ୟ ଓ ସର୍ବବ୍ୟାପୀ ବ୍ରହ୍ମ, ତୁମକୁ ନମସ୍କାର । ତୁମେ ସମସ୍ତଙ୍କର ଆଶ୍ରୟସ୍ଥାନ, ତୁମେ କେବଳ ବରଣୀୟ, ତୁମେହିଁ ଏକା ଏହି ଜଗତର ପାଳକ ଓ ସ୍ୱପ୍ରକାଶକ, ତୁମେ ହିଁ ଜଗତର ସୃଷ୍ଟି ସ୍ଥିତି ପ୍ରଳୟକର୍ତ୍ତା । ତୁମେ ହିଁ ସମସ୍ତଙ୍କର ଶ୍ରେଷ୍ଠ, ନିଶ୍ଚଳ ଓ ଦ୍ୱିଧାଶୂନ୍ୟ । ତୁମେହିଁ ସକଳ ଭୟର ଭୟ ଓ ଭୟାନକର ଭୟାନକ । ତୁମେହିଁ ପ୍ରାଣୀମାନଙ୍କର ଗତି ଓ ପାବନମାନଙ୍କର ପାବନ । ତୁମେ ହିଁ ମହୋଚ୍ଚ ପଦ ସକଳର ନିୟନ୍ତା, ଶ୍ରେଷ୍ଠରୁ ଶ୍ରେଷ୍ଠ, ଏବଂ ରକ୍ଷକଙ୍କର ରକ୍ଷକ । ଆମ୍ଭେମାନେ ତୁମକୁ ସ୍ମରଣ କରୁ, ଆମ୍ଭେମାନେ ତୁମକୁ ଭଜନ କରୁ, ତୁମେ ଜଗତର ସାକ୍ଷୀ, ଆମ୍ଭେମାନେ ତୁମକୁ ନମସ୍କାର କରୁ । ସତ୍ୟସ୍ୱରୂପ, ଆଶ୍ରୟସ୍ୱରୂପ, ଅବଲମ୍ବରହିତ, ସଂସାର ସାଗରର ଅଦ୍ୱିତୀୟ ଈଶ୍ୱରଙ୍କର ଶରଣାପନ୍ନ ହେଉ ।

Digitized by srujanika@gmail.com

# ସ୍ତୋତ୍ର

ନମୋ ନମସ୍ତେ ଭଗବନ୍, ଦୀନାନାଂ ଶରଣଂ ପ୍ରଭୋ,
ନମସ୍ତେ କରୁଣାସିନ୍ଧୋ ! ନମସ୍ତେ ମୋକ୍ଷ ଦାୟକ ।
ପିତାମାତା ପରିତ୍ରାତା, ତ୍ୱମେକଂ ଶରଣଂ ସୁହୃତ୍
ଗତିର୍ମୁକ୍ତିଃ ପରମାନନ୍ଦ, ତ୍ୱମେକଂ ଜଗତାଂ ପତିଃ ।
ପାପଗ୍ରାହ-ସମାକୀର୍ଣ୍ଣେ, ମୋହ ନୀହାର-ସଂବୃତେ,
ଭବାବ୍‌ଧୌ ଦୁସ୍ତରେ, ନାଥ ନୌରେକା ଭବତଃ କୃପା ।
ତତ୍-କୃପା-ତରଣିଂ ଦେହି, ଦେହି ନାଥ ବରାଭୟଂ,
ମୃତ୍ୟୁମାୟାମୟେ ଘୋରେ ସଂସାରେ ଦେହିମେହ୍ୟମୃତଂ ।
କ୍ଷିପ୍ରଂ ଭବତୁ ଶାନ୍ତାତ୍ମା ଭକ୍ତସ୍ତେ, ଭକ୍ତ-ବତ୍ସଳ,
ନିର୍ବାଣଂ ଯାତୁ ପାପାଗ୍ନି ତ୍ୱତ୍ପ୍ରସାଦାତ୍, ପରେଶ୍ୱର ।

ହେ ଭଗବନ୍ ! ହେ ଦୀନ ଶରଣ ! ହେ ପ୍ରଭୋ ! ତୁମକୁ ବାରମ୍ବାର ପ୍ରଣାମ । ହେ କରୁଣାସିନ୍ଧୋ, ହେ ମୁକ୍ତିଦାତା, ତୁମକୁ ପ୍ରଣାମ । ତୁମେ ପିତା, ପାଳନକର୍ତ୍ତା, ମୋକ୍ଷକର୍ତ୍ତା, ଏକମାତ୍ର ଆଶ୍ରୟ ଓ ସୁହୃତ ; ତୁମେ ଗତି, ମୁକ୍ତି ପରମ ଆନନ୍ଦ, ତୁମେ ହିଁ ଜଗତର ପତି । ଏହି ପାପସଙ୍କୁଳ ଓ ମୋହକୁଜ୍ଝଟିକାବୃତ ସଂସାର ସାଗରରେ ତୁମର କୃପା ହିଁ ତରଣୀସ୍ୱରୂପ । ହେ ନାଥ, ସେହି ତରଣୀ ଆମକୁ ଦିଅ । ଆମ୍ଭମାନଙ୍କୁ ଅଭୟ ଦାନ କର । ମୃତ୍ୟୁ ମାୟାମୟ ଏହି ଘୋର ସଂସାରରେ ଆମ୍ଭମାନଙ୍କୁ ଅମୃତଧାମ ଦେଖାଅ । ହେ ଭକ୍ତବତ୍ସଳ, ତୁମର ପ୍ରସାଦରେ ପାପାଗ୍ନି ନିର୍ବାଣ ହେଉ ଓ ତୁମର ଭକ୍ତ ଶୀଘ୍ର ଶାନ୍ତି ଲାଭ କରୁ ।

---

( ଲଳିତ ବିଭାସ-ଏକତାଲୀ )

ପାହିଲାଣି ରାତି ପ୍ରେମାନନ୍ଦେ ମାତି
ଗାଅରେ ପ୍ରଭାତୀ ସୁମଙ୍ଗଳ ଗୀତ,
ଉଠ ନରନାରୀ ସ୍ମର ହିତକାରୀ
ପାପତାପହାରୀ ପ୍ରାଣେଶ ଚରିତ ।

Digitized by srujanika@gmail.com

ଧୀରେ ଧୀରେ କେଶାନ୍ତ    ଲଭି ବସୁମଣ୍ଡ
ପୂଜନ ବିଶ୍ୱପତି ପ୍ରେମ-ଭକ୍ତିଭରେ,
ସୁରଭି ସମୀରେ    ଢାଳି ଧୀରେ ଧୀରେ
ବିମଳ ଶିଶିରେ ବନ୍ଦେ ଶ୍ରୀପଦ୍ମରେ ।
ନାନାବିଧ ଛନ୍ଦେ    ଧରଣୀ ଆନନ୍ଦେ
ଭକ୍ତିଭରେ ବନ୍ଦେ ବିହଙ୍ଗ-କଣ୍ଠରେ,
ଏ ପବିତ୍ର କାଳେ    ନବ ପୁଷ୍ପମାଳେ
ଆନନ୍ଦରେ ଢାଳେ ବିଭୁ ଚରଣରେ ।
ନବୀନ ଆଶାରେ    ଦରିବେ ସହାରେ
ବିଭୁ ପ୍ରଶଂସାରେ ରତ ନର ନାରୀ,
ଏ ଶୁଭ ପ୍ରଭାତେ    ଯୋଡ଼ି ଦେବ ହାତେ
ତାଙ୍କ ପ୍ରାଣନାଥେ ଲଭ ଶାନ୍ତି-କାରି ।

( ରାଗିଣୀ ଲଳିତ-ତାଳ ଆଡ଼ା ଠେକା )

ଆଜି ଏ ଆକାଶ ପୂରି    ଅମୃତ ମଧୁର ରବେ
କି ବୀଣା ବାଜଇ ଘୋଷି ଜାଗରେ ଜାଗ ସରବେ ।
ଘୋର ମୋହ-ନିଦ୍ରା ତେଜି    ଏ ଅମୃତ ବାଣୀ ହେଜି
ଅମୃତର ଅଧିକାରୀ ଉଠ ହେ ଉଠ ମାନବେ ।
ଅସତ୍ୟର ଅଧୀନତା    ପାପ ତାପର ହୀନତା
ଅଧର୍ମର ନାଗପାଶ ଖଣ୍ଡି ଦଣ୍ଡକେ ହରିବେ,
ଫିଙ୍ଗି ଦୂରେ ମୋହରାଶି    ଉଠହେ ଭାରତବାସୀ
ବିଧାତାର ଆଶୀର୍ବାଦ ଲଭିବ ସଦ୍ୟ ଏ ଭବେ ।
ଫେଡ଼ି ନେତ୍ର ଦେଖିବାରେ    ନାଶି ପାପ ଅନ୍ଧକାରେ
ବିରାଜିତ ମୁକ୍ତିଦାତା ପୂର୍ଣ୍ଣ ମହିମା ଗୌରବେ,
ମହାନନ୍ଦେ ନରନାରୀ    ତାଙ୍କର ଜୟ ଉଚ୍ଚାରି
ପବିତ୍ର ଶୁଭ ସମ୍ବାଦ ଭୁଞ୍ଜ ମହାମହୋତ୍ସବେ ।

Digitized by srujanika@gmail.com

# ଈଶ୍ୱରଙ୍କ ଆହ୍ୱାନ

( କାମୋଦ-ଆଡ଼ତାଳ )

ଜଗତ୍‌ବାସୀ ନରନାରୀ ଆସ ଆସ ବହନ,
ଅମୃତ ସଙ୍ଗୀତ ଆଜ ଶୁଣ ଦେଇ ଶ୍ରବଣ ।
ନବର ମୁକ୍ତି ସମ୍ବାଦ    ସ୍ୱର୍ଗର ବିଜୟ ନାଦ
ରହିଅଛି ପୂରି ଆଜ ଏ ପୃଥିବୀ ଗଗନ ।
କହନ୍ତି ବ୍ରହ୍ମାଣ୍ଡେଶ୍ୱର,    ମୋହ-ନିଦ୍ରା ପରିହର,
ଜାଗ ଜାଗ ଜଗତ୍‌ବାସୀ ଫେଡ଼ ପ୍ରେମ ଲୋଚନ ।
ଦେଖ ପ୍ରେମ-ହସ୍ତ ମୋର    ଘୋର ପାପବନ୍ଧ ଡୋର
କ୍ଷଣକେ ଛିଣ୍ଡାଇ ତୋର କରୁଅଛି ମୋଚନ ।
ବିପୁଳ ଅବନୀକ୍ଷେତ୍ରେ    ଉନ୍ମୀଳାଇ ପ୍ରେମନେତ୍ରେ
ଦେଖ ବ୍ରହ୍ମ ବିଧାନର ପୁଣ୍ୟ ଅବତରଣ ।
ଦେଶ ବର୍ଣ୍ଣ ଜାତି ଭେଦ    ସର୍ବ ଅପ୍ରେମ ବିଚ୍ଛେଦ
ବିନାଶି, ପ୍ରେମର ରାଜ୍ୟ କରୁଅଛି ସ୍ଥାପନ ।
ଅସତ୍ୟର କାରାଗାର    ଅବନୀର ଦୁଃଖଭାର
ହିଂସା ମଦ ଅହଂକାର ସହାରୁଛି ବନ୍ଧନ ।
ପ୍ରେମ ପୁଣ୍ୟ ଜ୍ୟୋତିର୍ମୟ    ପବିତ୍ର ସତ୍ୟ ନିଳୟ
ଏ ବିଧାନ ମୁକ୍ତିମୟ ଉଜଳଇ ଭୁବନ ।
ମହାସମନ୍ୱୟକାରୀ    ସାଧୁଭକ୍ତ ଚିତ୍ତହାରୀ
ଇହ ପରକାଳ ସେତୁ-ରୂପେ ରାଜେ ଶୋଭନ ।
ଆସ ଉତ୍ତର ଦକ୍ଷିଣ,    ଆସ ପୂରୁବ ପଶ୍ଚିମ,
ଆସ ଦୁଃଖୀ ପରାଧୀନ ଆସ ହେ ନିଖିଳ ଜନ ।
ଆସ ଆସ ବେଗେ ଧାଇଁ,    ଭୟ ନାହିଁ, ଭୟ ନାହିଁ,
ମୁକ୍ତିରାଜ୍ୟ ଅବତୀର୍ଣ୍ଣ ଘେନ ଘେନ ଶରଣ ।

Digitized by srujanika@gmail.com

ଆସ ହେ ଆସ ହେ ଭାଇ, ଯିବା ବ୍ରହ୍ମନିକେତନେ,
ପଶିବା ଶରଣ ହେବେ ହେ ଅଭୟ ଶ୍ରୀଚରଣେ ।
ଦୁଃଖୀ ଅସହାୟ ସଖା ଏକା ସେହି ତ୍ରିଭୁବନେ,
ସେହି ପିତା ବୁଝିବେରେ ମର୍ମ ଦୁଃଖ ସଂଗୋପନେ ।
ପିତା ମାତା ପ୍ରଭୁ ଗୁରୁ କେ ଅଛୁ ତାଙ୍କ ବିହୁନେ
ପତିତପାବନ ପ୍ରଭୁ ଉଦ୍ଧାରିବେ କୃପାଗୁଣେ ।
ଅଛୁରେ ଅମୃତ ଧନ ତାଙ୍କର ଶାନ୍ତି ଭୁବନେ
ହରିବେ ସକଳ ଦୁଃଖ ଦେଇ ସେ ଅମୃତ-ଧନେ ।
ଡାକରେ ବ୍ୟାକୁଳେ ଡାକ ସେହି ଅଧମତାରଣେ
ବିଶ୍ୱାସେ ଲଭିବ ସ୍ୱର୍ଗ ସନ୍ଦେହ ନ କର ମନେ ।

---

( ଇଂରାଜୀ ସ୍ୱର )

ଫେଡ଼ି ନୟନ    କର ହେ ଦର୍ଶନ
ଭାରତାକାଶେ    ନବୀନ ତପନ
ହୋଇ ଉଦୟ    ଗାଇ ବ୍ରହ୍ମ-ଜୟ,
ପୁଣ୍ୟ କିରଣ    କରୁଛି ବର୍ଷଣ ।
ଉଠ ହେ ଉଠ    ନ କରିଣ ମଠ,
ପ୍ରେମର ଡାଲି    ସାଜ ହେ ବନ୍ଦନ ।
ଭକ୍ତି-ଚନ୍ଦନେ    ପୁଣ୍ୟର ବସନେ
ହୋଇ ଭୂଷିତ    କର ଆଗମନ ।
ନବୀନ ବର୍ଷେ    ମନର ହରଷେ,
ନର ନାରୀଏ    କର ସଙ୍କୀର୍ତ୍ତନ ।
ବିଶ୍ୱାସ-ଅଗ୍ନି    ଜାଳି ଭ୍ରାତା ଭଗ୍ନି,
ଡାକ ପ୍ରାଣେଶେ    ଦେଇ ପ୍ରାଣ ମନ ।
ଆତ୍ମା-ଘୃତରେ    ଶରୀର-କାଷ୍ଠରେ
ଜୀବନ ଯଜ୍ଞ    କର ସମାପନ ।

Digitized by srujanika@gmail.com

(ଲଳିତ—ଆଡ଼ାଠେକା)

ଆସ ଆସ ଆସ ସଭି　　ବ୍ରହ୍ମ ପ୍ରେମ ନିକେତନେ,
ପୂଜିବା ଆନନ୍ଦେ ମିଳି　　ପ୍ରେମମୟ ଶ୍ରୀଚରଣେ ।
କ୍ଷୁଦ୍ର ନୀଚ ଅହଙ୍କାର,　　ହିଂସା କ୍ରୋଧାଦି ବିକାର,
କୁଟିଳ ସ୍ୱାର୍ଥ ବିସ୍ତର　　ନ ରହୁ କାହାର ମନେ ।
କ୍ଷମାସିନ୍ଧୁ ହରି ନିଜେ　　ହୃଦୟେ କରନ୍ତୁ ବିଜେ,
ବିକାଶନ୍ତୁ କ୍ଷମା-ବୀଜେ　　ପ୍ରଶାନ୍ତ ହୃଦ-କାନନେ ।
ବ୍ରହ୍ମ ସର୍ବ୍ବର ବାଞ୍ଛିତା　　ବ୍ରହ୍ମ ପ୍ରେମ ଗମ୍ଭୀରତା
ସେ ପ୍ରେମର ଉଦାରତା　　ହେଜ ସଭି ହେଜ କ୍ଷଣେ ।
ପ୍ରେମ ମହିମା ସୁମରି　　ଆସ ସଭି ଆଶା କରି,
ମିଳାଇବେ ନିଜେ ହରି　　ମହାପ୍ରେମର ମିଳନେ ।

—୦—

(ଜୟ ଜୟନ୍ତୀ—ଆଠତାଳୀ)

ସର୍ବେ ମିଳି ଡାକ ବ୍ରହ୍ମେ　　ବ୍ରହ୍ମାଣ୍ଡ-ଈଶ୍ୱର ହେ,
ଦେହ ବ୍ରହ୍ମ ନାମ ବାଜୁ ହୃଦ-ମୃଦଙ୍ଗରେ ହେ ।
ଅନନ୍ତ ସୁନୀଳ ବ୍ୟୋମେ　　ନକ୍ଷତ୍ର ଭାସ୍କର ସୋମେ
ବିରାଜିତ ମହେଶ୍ୱର ଜୀବନ୍ତ ରୂପରେ ହେ ।
ବିସ୍ତୀର୍ଣ୍ଣ ଅବନୀ ତଳ　　ନଦୀ ସମୁଦ୍ର ଅଚଳ
ପ୍ରକାଶନ୍ତି ବିଭୁକୀର୍ତ୍ତି ସର୍ବ ସମୟରେ ହେ ।
ଅସଂଖ୍ୟ ବାରିଦ ରାଜି　　ଅନ୍ତରୀକ୍ଷରେ ବିରାଜି
ଘୋଷନ୍ତି ବିଭୁଙ୍କ ନାମ ଗମ୍ଭୀର ନାଦରେ ହେ ।
ଗାଅ ସର୍ବେ ସେହି ନାମ　　ମଙ୍ଗଳ ଶାନ୍ତିର ଧାମ,
ନ ରହିବ ପାପ ତାପ ଆଉ ହୃଦୟରେ ହେ ।

—୦—

Digitized by srujanika@gmail.com

( ଲଳିତ—ଆଡ଼ାଠେକା )

ରଜନୀ ପାହିଲା ଏବେ ଜାଗ ମନ ଆନନ୍ଦରେ,
ପବିତ୍ର ହୃଦୟେ ପୂଜ ପ୍ରେମସିନ୍ଧୁ ମହେଶ୍ୱରେ ।
ଅକାଶେ ନବୀନ ରବି       କିବା ଜ୍ୟୋତିର୍ମୟ ଛବି
ଜଗତ ଅନ୍ଧାର ହରି ବନ୍ଦେ ବିଶ୍ୱ ଧୁରନ୍ଧରେ ।
କୁସୁମ କାନନବତୀ       ମନୋହରା ବସୁମତୀ
ସୁମଧୁର ତାନେ ସ୍ତୁତି କରେ ବିହଙ୍ଗ କଣ୍ଠରେ ।
ଏ ଶୁଭ କାଳରେ ମନ       ଚିନ୍ତ ନିତ୍ୟ ନିରଞ୍ଜନ
ତାଙ୍କରି ପବିତ୍ର ନାମ ଗାଅ ପବିତ୍ର ଅନ୍ତରେ
ସାର୍ଥକ ହେବ ଜୀବନ       ମିଳିବ ଅମୃତ-ଧନ
ବିରାଜିବ ଶାନ୍ତି-ପଦ୍ମ ସ୍ୱଚ୍ଛ ହୃଦ-ସରୋବରରେ ।

( ପୂରବୀ—ଆଡ଼ାଠେକା )

ସମାଗତ ସାୟଂକାଳ ଚିନ୍ତ ଏବେ ପରାତ୍ପରେ,
ଶାନ୍ତି ନିକେତନ ତାଙ୍କ ଶ୍ରୀପଦ ବିଶ୍ୱ ମଧ୍ୟରେ ।
ବିଶ୍ରାମ ଲଭିବା ଆଶେ       ଜୀବକୁଳ ଯେଝା ବାସେ
ନିଜ ନିଜ କାର୍ଯ୍ୟ ସାରି ଧାଉଁଛନ୍ତି ଆନନ୍ଦରେ ।
ରେ ସଂସାର କ୍ଲାନ୍ତମନ       ବେଗେ କର ଅନ୍ୱେଷଣ
ପ୍ରଭୁଙ୍କ ଚରଣାଶ୍ରମ ଏବେ ବ୍ୟାକୁଳ ଅନ୍ତରେ ।

ପରଜ-ଆଡ଼ତାଳୀ ।

ମୋର ହୃଦୟରେ, କାହିଁକି ଏଡ଼େ ଚପଳ,
ଅନା ଅନା ବାରେ,       ସନ୍ଧ୍ୟାଗଗନକୁ
ତେଜ ମିଛ କୋଳାହଳ ।
ଗୋଟି ଗୋଟି ହୋଇ       ଆସୁଛନ୍ତି ଉଇଁ
ଆକାଶରେ ତାରାଦଳ,
କି ସୁନ୍ଦର ପ୍ରଭା       କି ନୀରବ ଶୋଭା
ଦେଖି ନେତ୍ର ସୁଶୀତଳ ।

Digitized by srujanika@gmail.com

ନକ୍ଷତ୍ର ହୃଦୟ— ଆକାଶରେ ଯେବେ
ସେହ୍ନପରି ସୁବିମଳ
ଭବ ତାରାପୁଞ୍ଜ ଉଠିବ ନୀରବେ
ଜୀବନ ହେବ ସଫଳ
ଆହା କି ସୁନ୍ଦର ଭକ୍ତହୃଦ ଭବ
ବ୍ରହ୍ମଲୋକେ ସମୁଜ୍ଜ୍ୱଳ,
ସେହ୍ନପରି କେବେ ସଭାବ ପ୍ରଭବରେ
ପୂରିବ ମୋ ଅନ୍ତସ୍ଥଳ ।

---

(ବାହାର-ଝାମ୍ପତାଳ)

ଦ୍ୟୁଲୋକ ଭୂଲୋକ ଆଜି ଗାଅ ସେ ମହିମା,
ଭଜ ସର୍ବେ ସୁର ନର ପରମ ଆନନ୍ଦେ ।
ଦୀପ୍ତି ଦାତା ଭାନୁଚନ୍ଦ୍ର ତାରକାମଣ୍ଡଳୀ
ସର୍ବେ ମିଳି ବନ୍ଦ ଆଜି ବିଶ୍ୱଧୁରନ୍ଧରେ ।
ଗାଅ ମେଘ ବ୍ରହ୍ମନାମ ଆଜି ଘନଘୋଷେ
ସେ ନାମ ଚପଳା ଆଜି ଘୋଷ ବ୍ୟୋମେ ବ୍ୟୋମେ ।
ଲହରୀସଙ୍କୁଳ ସିନ୍ଧୁ କଲ୍ଲୋଳିନୀ ସଙ୍ଗେ
ଗାଅ ସେ ଗମ୍ଭୀର ନାମ ଗମ୍ଭୀର କଲ୍ଲୋଳେ ।
ମଳୟ ପବନ ଗାଅ ଅମୃତ ସଙ୍ଗୀତେ
ପତିତପାବନ ନାମ ବହ ଧୀରେ ଧୀରେ ।
ବିହଙ୍ଗମକୁଳ ଘୋଷ ସେ ନାମ ପୁଲକେ
ଝଙ୍କାର କାନନ ଗିରି ସୁମଧୁର ତାନେ ।
ଜୀବଜନ୍ତୁ ଆଜି କେହି ନ ରହ ନୀରବ,
ବିଶ୍ୱବାସୀ ସର୍ବେ ଗାଅ ହୃଦୟପୁଲକେ ।
ରେ ପ୍ରାଣ-ବିହଙ୍ଗ ଆଜି ସେହି ବ୍ରହ୍ମନାମ
ଗାଅ ଗାଅ ଝଙ୍କାରଣ ହୃଦୟ କନ୍ଦରେ ।

---

Digitized by srujanika@gmail.com

(ରାଗ-ବଙ୍ଗଳାଶ୍ରୀ ।)

ଆସ ଦୁଃଖୀ ତାପୀ ଉପାସନା-ତୀର୍ଥେ
ଲଭିବ ଶାନ୍ତି ଅପାର ।
ପରମ ପବିତ୍ର ଉପାସନା-ଭୂମି
ସର୍ବ ତୀର୍ଥ ମର୍ତ୍ତ୍ୟ ଦ୍ୱାର ।
ମହାତୀର୍ଥ ଭୂମି ଅତୁଳ୍ୟ ଜଗତେ
ଭକତହୃଦୟାଧାର ।
ଅବତୀର୍ଣ୍ଣ ଯହିଁ ପାପ-ତାପ-ହାରୀ
ପୂର୍ଣ୍ଣ ବ୍ରହ୍ମ ନିର୍ବିକାର ।
ସେହି ସ୍ୱର୍ଗ ଭୂମି ସେହି ମୋକ୍ଷଧାମ
ଅମୃତ କୈବଲ୍ୟାଧାର ।
ଯହିଁ ପୁଣ୍ୟଧାରା ଝର ନିରନ୍ତର
ହରଇ କଲୁଷଭାର ।
ପ୍ରତି ପ୍ରାଣେ ପ୍ରାଣେ, ଅଛି ପ୍ରତିଷ୍ଠିତ
ସେହି ତୀର୍ଥ ମହୋଦାର ।
ଯାଅ ଯାଅ ତହିଁ ନ କର ବିଳମ୍ବ
ଶୁଣ ଶୁଭ ସମାଚାର ।

---

(ଭୈରବୀ-ଏକତାଳ)

ପାହିଲା ରଜନୀ, ଉଠ ଭାଇ ଭଗ୍ନି,
ଦେଖ ନୟନ ବିସ୍ତାରି ।
ପ୍ରେମ-ନନ୍ଦନରେ ଦୁଃଖୀ ତାରିବାରେ,
ରହିଛନ୍ତି ପ୍ରଭୁ ହରି, ହେ ଭାଇ !
ଦେଖ ନୟନ ଫିଟାଇ ।
ଦେଖ ପକ୍ଷିଗଣ ମୋହିଣ ଭୁବନ
ଗାଉଛନ୍ତି ତାଙ୍କ ନାମ,
ରେ ଆତ୍ମା ବିହଙ୍ଗ, କର ବନ୍ଧୁ ସଙ୍ଗ,
ହେବୁ ତୃପ୍ତ ସିଦ୍ଧକାମ, ରେ ଚିତ୍ତ ।
କାହିଁକି ନ ଲେଉଟୁ ହିତ ।

Digitized by srujanika@gmail.com

ତାଙ୍କ ପଦେ ମନ    କରଣ୍ଡ ଯତନ
ଦୃଅ ରୂ ଲଗାଇ ବାରେ,
ଶୀଘ୍ର ଦୁଃଖ ଯିବ,    ଆନନ୍ଦ ହୋଇବ,
ଧ୍ୟାୟ ଶ୍ରୀପଦ ହୃଦରେ, ରେ ମନ;
ଦେଖ ଗଲାଣି ଜୀବନ ।

ଏ ଭବସାଗରେ    ବିଘ୍ନ ସଙ୍କଟରେ
ହରିହା ଭକ୍ତବତ୍ସଳ,
ତାଙ୍କୁ ଆଜ ସବେ    ଡାକ ଭକ୍ତିଭାବେ,
ହେବ ଜୀବନ ସଫଳ, ହେ ଭାଇ ।
ତବେ ଆଉ କେହୁ ଦାହା ନାହିଁ ।

---

(ଭୈରବ-ଠୁମ୍ରୀ)

ଜୟ କରୁଣାମୟ    ମଙ୍ଗଳ ଆଳୟ
ଆନନ୍ଦ କଲ୍ୟାଣଦାତା ହେ;
ପରମ ଶୋଭନ    ଚିତ୍ତ ପ୍ରଲୋଭନ
ମଙ୍ଗଳ ପ୍ରେମ ବିଧାତା ହେ ।
ନିଖିଳ ଈଶ୍ୱର    ତୁମ୍ଭେ ପରାତ୍ପର
ଦୀନହୀନ ବିଶ୍ୱପାତା ହେ,
ପତିତପାବନ    ଅଧମ ତାରଣ
ଏକ ମାତ୍ର ପିତାମାତା ହେ ।
ବିପଦ ବାରଣ    ସମ୍ପଦକାରଣ
ଭୟଭଞ୍ଜନ ଦୀନତ୍ରାତା ହେ
ଭବ-ସିନ୍ଧୁ-ତରୀ    ଚରଣ ତୁମ୍ଭର
କହ ସୁଧାମୟ ବାର୍ତ୍ତା ହେ ।

---

Digitized by srujanika@gmail.com

(ଝିଁଝିଟି-ଝାମ୍ପତାଳ)

ଜୟ ମା ଆନନ୍ଦମୟୀ ବିଶ୍ୱତାରଣୀ
ଦୁଃଖ ଭୟନାଶିନୀ ସୁଖ-ଶାନ୍ତିଦାୟିନୀ ।
କୋଟି ବିଶ୍ୱପ୍ରସବିନୀ, ପାପାସୁରବିମର୍ଦ୍ଦିନୀ
ଭକ୍ତ-ପ୍ରାଣନିବାସିନୀ ଭକ୍ତଜନନୀ ।

ମା ଗୋ ତୋ ନୟନ ଦୃଷ୍ଟି କରଇ ଅମୃତ ବୃଷ୍ଟି
ବହଇ ଆନନ୍ଦେ ସୃଷ୍ଟି ଦିବା ରଜନୀ ।
ସେ ପ୍ରେମବକ୍ଷର ସୁଧା ହରଇ ଭୁବନ କ୍ଷୁଧା
ସେ ପୁଣ୍ୟ ଚରଣ ଏକା ପରଶମଣି ।

---

( ଭୈରବ—ଏକତାଳ )

କୋଟି ଜଗତର ରାଜ ରାଜେଶ୍ୱର
ବିରାଜ ହୃଦୟ-ଗଗନେ ।
ପ୍ରଭୋ ନିରଞ୍ଜନ, ଡାକେ ଦୀନ ଜନ
ଅବନତ ତବ ଚରଣେ ।
ଚିର ସଖା ମୋର ଅନ୍ତରତମ
କେ ଅଛୁ ସଂସାରେ ତୁମ୍ଭର ସମ
ଚିର ପିତା ମାତା ସହାୟ ମମ
ଚିର ସଙ୍ଗୀ ମମ ଜୀବନେ ।
ଭୁବନ ବରେଣ୍ୟ ଭୟଭଞ୍ଜନ
ସର୍ବ ଶୁଭଦାତା ଶାନ୍ତି-ସଦନ
ଦୁରିତ-ତିମିର-ହର ଶରଣ
ଅଛ ସଖା ପ୍ରାଣେ ଗୋପନେ ।
ଦଗ୍‌ଧ ହୃଦୟ ଶାନ୍ତି-ଚନ୍ଦନ
ଆନନ୍ଦ-ଆଲୟ ପ୍ରାଣ ନନ୍ଦନ
ନିଖିଳ ଜଗତେ ଅମୃତ-ଧନ
ବିତରୁଛ ପ୍ରଭୋ ଗୋପନେ ।

---

Digitized by srujanika@gmail.com

## ଉଦ୍‌ବୋଧନ-ବନ୍ଦନା

( ରାଗିଣୀ—ଖାମ୍ବାଜ )
( ତାଳ—ଏକତାଳ )

ଜୟ ଦେବ ଜଗତ-ନାଥ ଜଗତ ସୃଜନକାରୀ ହେ,
(ପ୍ରଭୁ) ନିତ୍ୟ ସତ୍ୟ ଅଦ୍ୱିତୀୟ ଭକ୍ତ-ମନ-ବିହାରୀ ହେ ।
ସର୍ବଭୂତେ ବର୍ତ୍ତମାନ, କି ଭୂତେ କି ବର୍ତ୍ତମାନ
ମହାନ୍ ଗମ୍ଭୀର-ଜ୍ଞାନପୂର୍ଣ୍ଣ ଦର୍ପହାରୀ,
ଦୟାର ଆଧାର ନାଥ, ପ୍ରେମ-ସିନ୍ଧୁ ପରମ ତାତ
(ପ୍ରଭୁ) ସଦାନନ୍ଦମୟ ବିଧାତ, ଦୁଃଖ-ବିପଦହାରୀ ହେ ।

---

(ରାଗିଣୀ-କାହ୍ନଡ଼ା)

ହୃଦୟ-ସଖା ଆସ ଏଥର,
ଆସନ୍ତୁ ନ ଯିବ ଫେରି ଶୂନ୍ୟ ହସ୍ତର ।
ଅନେକ ଅମୂଲ୍ୟ ଧନ କରିବ ହେ ବିତରଣ
ପାଇ ତୁମ୍ଭ ପ୍ରେମ ଅନ୍ନ ହୋଇବ ଅମର ।
ତୁମ୍ଭ ନିମନ୍ତ୍ରଣ ପାଇ ଆସିଅଛୁ ବେଗେ ଧାଇଁ,
ନିର୍ମଳେ ହୃଦେ ବସାଇ ପୂଜିବୁ ସତ୍ୱର ।
ଭାଇ ଭଗ୍ନୀ ସଙ୍ଗେ ମିଳି ଦେଇ ସୁଖେ କରତାଳି,
ଗାଇ ତୁମ୍ଭ ନାମାବଳୀ ଭୁଲିବୁ ସଂସାର ।
ଅସାର ମାୟା-ବନ୍ଧନ ସ୍ୱହସ୍ତେ କରି ଛେଦନ
ନାମେ ବାନ୍ଧିଥିବ ମନ ଏ ଆଶା ମୋହର ।

---

( ତୋଡ଼ି ପରଜ—ଆଡ଼ତାଳୀ )

ଶୁଭବିଧାତା ହେ କର ହେ ଶୁଭ ବିଧାନ,
ଆଜି ଏ ଶୁଭକ୍ଷଣେ ତୁମ୍ଭ ଶ୍ରୀଚରଣେ
ଏ ଅନାଥେ ଦିଅ ସ୍ଥାନ ।
ବର୍ଷ ଗଲା ଚାଲି ବୃଥା ଖେଳି ଖେଳି
କରି ନାନା ପାପମାନ,
ନବ ବର୍ଷ ଆଜି ଆସିଅଛୁ ପଦେ
ଦିଅ ମୋତେ ନବ ପ୍ରାଣ ।

Digitized by srujanika@gmail.com

ପାପେ ତାପେ ପ୍ରଭୁ    ଏ ହୃଦୟ ଦେଶ
ବିକଟାଳ ଶମଶାନ,
ନିରାଶ୍ୱାସ ହୋଇ    ଡାକୁଅଛୁ ମୁହିଁ
ଆସ ଆଶାର ନିଦାନ ।

ଶ୍ରୀପଦ ପରଶେ    କ୍ଷଣକେ ହୃଦୟ-
ଦୁଃଖ ହେବ ଅବସାନ,
ପୁଣ୍ୟ-ନିର୍ଝରଣୀ    ହେବ ପ୍ରବାହିତ
ଶୀତଳ ହୋଇବ ପ୍ରାଣ ।
ତବ ଆଶୀର୍ବାଦେ    ହେବ ନବୀଭୂତ
ଏ ହୃଦୟ ମ୍ରିୟମାଣ,
ପ୍ରେମାନନ୍ଦେ ମାତି    ଭକ୍ତଦଳ ସଙ୍ଗେ
କରିବି ହେ ନାମଗାନ ।
ଜୀବନ ସମର୍ପି    ତବ ପଦତଳେ
କରିବି ଅମୃତ ପାନ,
ଦେଲି ଆଶା ସଦା    କୃପାକରି ତାହା
ପୂର୍ଣ୍ଣ କର ଭଗବାନ ।

---

(ମନୋହର ସାହି—ଏକତାଳି)

ପ୍ରେମ ତରଙ୍ଗ    କରୁଛି ରଙ୍ଗ
କେତେ ଆଜ ଏ ଉତ୍ସବେ,
ଶୁଷ୍କ ଜୀବନ    ସଙ୍କୀର୍ଣ୍ଣ ମନ
ପ୍ରେମେ ବିଭୋଳ ନୀରବେ ।
ହେ ଭକ୍ତଗଣ    ସ୍ୱର୍ଗଭୁବନ
ଦେଖ ହୋଇଛି ଅବନୀ,
(ଭକ୍ତସଖା ଆଗମନେ)
ପ୍ରେମ ଜଳଧି    ଜୀବନ-ନଦୀ
ଏକାକାର ଆଜ ଭବେ ।
ଚନ୍ଦ୍ର ତପନ    ତାରା ଗଗନ
ସତ୍ୟରୂପ ସାଗରରେ

Digitized by srujanika@gmail.com

ହୋଇ ସ୍ୱପମାନ          ସତ୍ୟ ଜୟ ଗାନ
କରୁଛନ୍ତି ସରବେ ।
(ଆହା କି ସୁଧାମୟ ସ୍ୱରେ)

ଧନ୍ୟ ଜୀବନ          ଧନ୍ୟ ମରଣ
ଇହକାଳ  ପରକାଳ,
ଏକାଧାରେ ଆଜି          ଏକାକାରେ ଆଜି
ଘୋଷୁଛନ୍ତି ସଗରବେ ।
( ମାଭୈ ମାଭୈ ରବେ )

ଜୀବନ ପୁରାଣେ          ଏ ଦୃଶ୍ୟ ଯତନେ
ଲେଖି ରଖ ହେ ମାନବେ,
ନିତ୍ୟ ନବ ନବ          ଦେଖିଣ ଉତ୍ସବ
ନୀରସ ନ ହୁଅ ଲବେ ।
( ସଂସାର ମରୁ ମଧ୍ୟରେ )

ରକ୍ତ ମାଂସର          ହୋଇ ସହଚର
ଭ୍ରମି ଅସତ୍ୟ ପଥରେ,
କେତେ ମହାପାପ          କରିଛ ଅମାପ
ନ ଦେଖି ପ୍ରାଣ ବଲ୍ଲଭେ ।
(ଜଡ଼ ଅଧୀନ ହୋଇ)

ଆଜି ଶୁଭଦିନେ          ସଂକଳ୍ପ ଜୀବନେ
କର ହେ ମିଳି ସରବେ,
(ସତ୍ୟପଥେ ଚଳିବ)

ବ୍ରହ୍ମପଦ ଧରି          ପ୍ରେମ ଅନୁସରି
ମାଧବ ପୁଣ୍ୟ ଗୌରବେ ।

---

Digitized by srujanika@gmail.com

(ଝେଞ୍ଜି ପରଜ—ଆଡ଼ାତାଲୀ)

ଦୟା ସାଗର ହେ ଦେଖାଦିଅ ଅଛ କାହିଁ ।
ତୁମ୍ଭ ବିନା ପ୍ରଭୁ ଏ ବିଶ୍ୱ ସଂସାର
କ୍ଷଣେ ଭଲ ନ ଲାଗଇ ।
ମୋହ ଅନ୍ଧକାରେ ଅନ୍ଧ ମୋ ନୟନ
ଶ୍ରୀଚରଣ ଦିଶୁ ନାହିଁ ;
ପାପ ଯାତନାରେ ହୃଦୟ ଅଥୟ
ହେଉଛୁ ହେ ବିଶ୍ୱସାଇଁ ।
ଆକାଶ ସାଗର ଗିରିବନ ନଦୀ
ଚରାଚର ବିଶ୍ୱ ଏହି ;
ସଂସାର ବିଚିତ୍ର ନୟନ ଅଗ୍ରତେ
କ୍ଷଣେ ସୁଦ୍ଧା ନ ଶୋଭଇ ।
ଜୀବନ ଯୌବନ ଧନ ମାନ ଜ୍ଞାନ
କାହିଁରେ ତ ଶାନ୍ତି ନାହିଁ ;
ଜୀର୍ଣ୍ଣ ବ୍ୟାକୁଳ ଅବସନ୍ନ ଚିତ୍ତେ
ଡାକୁଅଛୁ ପ୍ରଭୁ ମୁହିଁ ।
ଦରଶନ ବାରେ ଦିଅ ପ୍ରାଣ ସଖା
ଭକ୍ତ ଜନ ଭବତ୍ରାହୀ,
ତୁମ୍ଭ ପାଦପଦ୍ମେ ସମର୍ପି ହୃଦୟ
ରହିବ ନିର୍ଭୟ ହୋଇ ।

---

(କାଫି-ମିଶ୍ର-କାଓ୍ୱାଲି)

ଦୁଃଖେ କାନ୍ଦଇ ଧରଣୀ,
ଦୁଃଖଭାର ହର ତାର ଦୟାମୟୀ ବିଶ୍ୱଜନନୀ ।
ଦେଖ କୋଟି କୋଟି ଲୋକେ ଦାରିଦ୍ର୍ୟ ସନ୍ତାପ ଶୋକେ
ରହିଛନ୍ତି ଅବସନ୍ନ ଦିବା ରଜନୀ
ଜୀବନ ବିଷମ ଭାର, ଦିବସ ଗଣି,
ସେ ଦୁଃଖ ଦାରିଦ୍ର୍ୟ ଶୋକ ହର ମା ଗୋ ଦୁଃଖନାଶିନୀ ।

Digitized by srujanika@gmail.com

ଅବିଦ୍ୟାର ଅନ୍ଧକାରେ          ସଂସାର-ମୃଗତୃଷ୍ଣାରେ
ଭୁଲୁଛନ୍ତି ଶତ ଶତ ବିଷୟୀ ଧନୀ,
ଅନିତ୍ୟ କ୍ଷଣ ଭଙ୍ଗୁରେ ଶାଶ୍ୱତ ମଣି,
ନାଶି ସବୁ ମୋହ ଭ୍ରାନ୍ତି ଉଦ୍ଧାର ମା ବିଶ୍ୱପାବନୀ ।

ତୁମ୍ଭର ଇଚ୍ଛା କର ହେ ପୂର୍ଣ୍ଣ ମୋହର ଏ ଜୀବନେ
ଦଗ୍ଧ କର ମୋ ବାସନାରାଶି ପୁଣ୍ୟର ହୁତାଶନେ ।

ଏ ଜୀବନର ସକଳ ଦ୍ୱନ୍ଦ୍ୱ
ନାଶ ହେ ପ୍ରଭୁ ପରମାନନ୍ଦ,
ହର ହେ ମୋର କୁଟିଳ ବନ୍ଧ
ମୁକ୍ତି-ଉତ୍ସବ ବିସ୍ତାର କର ହୃଦୟ ନିକେତନେ ।

ଏ ଅହଙ୍କାର ବିକଟାକାର
କର ହେ ପ୍ରଭୁ କର ସଂହାର
ଘୋର ସଙ୍କଟୁ କର ଉଦ୍ଧାର
ଜୀବନ-ତରୀ କରହେ ପାର ତାର କର୍ଣ୍ଣ ଧାରଣେ ।

---

(ରେ ଗୁପ୍ତ—ଝିଂଟା)

ମୋ ମନ ସୁମନ ଦେଇ ହରିପଦ ପୂଜିବିରେ ।
ଅଧମ ତାରଣ ହରି ଏ ଅଧମେ କୃପାକରି
ଆସିବେ ହୃଦକୁଟୀରେ, ମହାନନ୍ଦେ ମଜିବି ରେ ।

ସେ ବିଶ୍ୱ ମୋହନ ମୁଖ ଦେଖି ପାଶୋରିବି ଦୁଃଖ,
ନରକର କୀଟ ମୁହିଁ ଦେବଭାବ ଭଜିବିରେ ।

ଅନାଇ ଥିବି ତାହାଙ୍କୁ, କହିବି ପ୍ରାଣନାଥାଙ୍କୁ,
ସେ ପଦରାଜୀବ ଛାଡ଼ି କାହିଁ ଆଉ ନ ଯିବି ରେ ।

---

Digitized by srujanika@gmail.com

(ଝିଁଝିଟ ଏକତାଳା)

ବାଜଇ ଅହା ଆନନ୍ଦ ବୀଣା ମହାଗଗନେ,
ସେ ମହାତାନେ ଭୁବନ ପ୍ରାଣ ନାଚେ ସଘନେ ।
ତାଳେ ତାଳେ ରବି ଚନ୍ଦ୍ରମା ତାରା
ନାଚନ୍ତି ଢାଳଣ କରଣଧାରା,
ଦ୍ୟୁଲୋକ ଧାଏ ପୁଲକଭରେ ଧ୍ୱନି ଶ୍ରବଣେ ।
ପୁଲକେ ଚପଳା ଚମକେ ମେଘେ,
ଅନ୍ତରୀକ୍ଷେ ବାୟୁ ବହଇ ବେଗେ,
ଭୂଲୋକ ଉପୁଜେ ମର୍ମେ ମର୍ମେ ଗିରି କାନନେ ।
ସଙ୍ଗୀତ ଲହରୀ ବିବିଧ ଛନ୍ଦେ
ଉଚ୍ଛୁଳଇ ବିଶ୍ୱେ ମହା ଆନନ୍ଦେ,
ବର୍ଷ ଋତୁ ମାସ ପକ୍ଷ ଦିନ ଅୟନେ ।
ସେ ବୀଣାର ସ୍ୱରତରଙ୍ଗ ପ୍ଳାବେ
ଚିଦାନନ୍ଦମୟ ଅତୁଳ ଭାବେ,
ଦେବ ଋଷି ଭକ୍ତ ସାଧୁ କବି ଜୀବନେ ।

---

(ଝିଟିଆସା-ଆଡ଼ତାଳୀ)

ଗାଅ ସର୍ବେ,
ତାଙ୍କର ମହିମା ଜୟ ଜୟ ରବେ ।
ହେ ଅନାଥ ନାଥ ଭଗବାନ୍,
ତାଙ୍କ ବିନା ଭବେ ନାହିଁ ତ୍ରାଣ,
ପ୍ରେମାନନ୍ଦେ ମାତି ସେ ଅଭୟ ପଦେ
ଏ ଜୀବନ କର ବଳିଦାନ ।
ହୃଦୟ ନନ୍ଦନ ପ୍ରାଣାରାମ
ପ୍ରାଣେଶ୍ୱର ପ୍ରାଣସଖା ନାମ
ଭଜ ନିରନ୍ତର ଜୀବନେ ମରଣେ
ହେ ଏକା ଶରଣ ଶାନ୍ତିଧାମ ।

Digitized by srujanika@gmail.com

ତାଙ୍କ ପାଦପଦ୍ମ ଆଶ୍ରୀକର
ଯିବା ସର୍ବେ ଭବ ସିନ୍ଧୁ ତର,
ସେ ଅଭୟ ଦାତା ତାରବେ ନମିଷେ
ସବ ପାପତାପ ଭୟ ହର ।
ଅସୀମ ଆକାଶେ ଜଳେ ସ୍ଥଳେ
ତାଙ୍କ ଶ୍ରୀଚରଣ ଛୁଆଁତଲେ,
ମହିମାର ଲୀଳା ଲଗିଛି ସତତ
ଦେଖି ଝରେ ଭକ୍ତ ଅଶ୍ରୁ ଜଳେ ।

---

(ରାଗିଣୀ-ଲଳିତ । ତାଳ-ଆଡ଼ାଠେକା ।)

"ମୁଁ ଅଛି" ଅନନ୍ତ-ସ୍ୱରେ ଆଜ ଅନନ୍ତ ଜନନୀ
ଘୋଷୁଛନ୍ତି ବିଶ୍ୱେ ସତ୍ୟ କମ୍ପାଇ ବିଶ୍ୱଧମନୀ ।
ଆଜି ସବ ଏକାକାର ଦେଶାଗ୍ରର କୂଳାଗ୍ରର
ହୋଇଅଛି ଛିନ୍ନ ଦେଖ ସ୍ୱର୍ଗ ହୋଇଛି ଅବନୀ ।
ଅମର ସନ୍ତାନ ସର୍ବେ ଗାଅ ଅମର ସଙ୍ଗୀତ,
ଅନନ୍ତ-ଉତ୍ସବ- ସ୍ରୋତେ ଝାସୁ ଜୀବନ-ତରଣୀ ।
ଉପଧର୍ମ କୁସଂସ୍କାର କରୁଥିଲା ଅତ୍ୟାଗ୍ରର,
ସତ୍ୟର ବିଜୟ ଭେରୀ ଶୁଣି ଛାଡ଼ିଛି ଧରଣୀ ।
'ସତ୍ୟମେବ ଜୟତେ' ଆଜ ସ୍ୱର୍ଣ୍ଣାକ୍ଷରେ ଲେଖା
ହୋଇଛି ସବ ସ୍ଥାନରେ ନାଚୁଛି ପ୍ରେମେ ଅବନୀ ।
ଶୁଣହେ ଜଗତ ବାସି, ଶୁଣ ଉତ୍କଳ ନିବାସି,
ସତ୍ୟମନ୍ତ୍ର ଦୀକ୍ଷା ଦେନ ଛାଡ଼ି ଅସତ୍ୟ-ସରଣୀ ।

---

(ଝିଁଝିଟି-କୀର୍ତ୍ତନ)

ବ୍ରହ୍ମନାମ ମହାମନ୍ତ୍ର କର କର ରେ ଗ୍ରହଣ,
ବ୍ରହ୍ମରୂପ ସମୁଦ୍ରରେ ପ୍ରେମେ ବୁଡ଼ ନିମଗନ ।
ଭୂଲୋକେ ଦ୍ୟୁଲୋକେ ବ୍ରହ୍ମ ସାଗରେ ପର୍ବତେ ବ୍ରହ୍ମ
ଜଳେ ବ୍ରହ୍ମ ସ୍ଥଳେ ବ୍ରହ୍ମ ବିଶ୍ୱ ବ୍ରହ୍ମନିକେତନ ।

Digitized by srujanika@gmail.com

ଶୋଣିତେ ନିଶ୍ୱାସେ ବ୍ରହ୍ମ    ସର୍ବ ଇନ୍ଦ୍ରିୟରେ ବ୍ରହ୍ମ
ବୁଦ୍ଧି ହୃଦୟରେ ବ୍ରହ୍ମ ବ୍ରହ୍ମମୟ ଦେହ ମନ ।
ଗୃହେ କାର୍ଯ୍ୟକ୍ଷେତ୍ରେ ବ୍ରହ୍ମ    ଇହ ପର କାଳେ ବ୍ରହ୍ମ
ଜନମେ ମରଣେ ବ୍ରହ୍ମ ଦେଶ କାଳ ବ୍ରହ୍ମେ ପୂର୍ଣ୍ଣ ।
ସର୍ବଶକ୍ତି ମୂଳାଧାର    ବ୍ରହ୍ମଜ୍ଞାନ ପାରାବାର
ବ୍ରହ୍ମ ସର୍ବ ସାରାତ୍ସାର ବ୍ରହ୍ମ ବ୍ରହ୍ମାଣ୍ଡ ଜୀବନ ।
ବ୍ରହ୍ମ ଶାସ୍ତ୍ର ବ୍ରହ୍ମ ଗୁରୁ    ବ୍ରହ୍ମ ବାଞ୍ଛାକଳ୍ପତରୁ
ତାରନ୍ତି ସର୍ବ ଭୟରୁ ବ୍ରହ୍ମ ପତିତ ପାବନ ।
ବ୍ରହ୍ମପିତା ବ୍ରହ୍ମମାତା    ବ୍ରହ୍ମ ନରନାରୀତ୍ରାତା
ବ୍ରହ୍ମ ମଙ୍ଗଳ ବିଧାତା ବ୍ରହ୍ମ କରୁଣାନିଧାନ ।
ଜୀବର ପରମ ଗତି    ବ୍ରହ୍ମ ସଖା ବ୍ରହ୍ମ ପତି
ବ୍ରହ୍ମ ଚରଣରେ ମତି ରହୁ ମୋର ଅନୁକ୍ଷଣ ।

---

(କାମୋଦ—ଏକତାଳ)

ସଂସାର ଜନେ କର ଅବଧାନ
ସନ୍ତତେ ଡାକୁଛନ୍ତି ଭଗବାନ,
ସନ୍ତାନ ସର୍ବେ ମୋର    ତେଜିଣ ମୋହ ଘୋର
ଲଭରେ ସତ୍ୟ ବେଦ ଆତ୍ମଜ୍ଞାନ ।
ଆସିଲ କାହୁଁ ଭବେ    ଚଳିଲ ନାହିଁ ଲବେ
ଲଭିଲ କାହୁଁ ଏହି ଦେହ ପ୍ରାଣ,
ଗମିବ କାହା ପାଶେ    ଅନିତ୍ୟ ଦେହ ନାଶେ
ଏ ସୃଷ୍ଟି ଲୀଳା କହ କା ଭିଆଣ ।
ମାତଛ ଏ ସଂସାରେ    ନିରତେ ସୁଖାଶାରେ
ଲୋଡ଼ୁଛ ନିତ୍ୟ ଧନ ଜନ ମାନ;
ତଥାପି କାହିଁକରେ    ବିସ୍ମୃର ଚତ୍ତେ ଧୀରେ
ନୋହିଲ ତୃପ୍ତ କ୍ଷଣେ ମନ ପ୍ରାଣ ।
କାହାର ଅଭାବରେ    ହେଳହେ ହେଳ କରେ
ବିପଦେ ବିଷ ସମ ହୁଏ ଜ୍ଞାନ,

Digitized by srujanika@gmail.com

ପ୍ରାଣର ଇଷ୍ଟ ଯାହା          କେ ଆଣି ଦେବ ତାହା
ଚିତ୍ତରେ ଚିନ୍ତେ ନିତ୍ୟ କରି ଧ୍ୟାନ ।
ପରମ ପିତା ମାତା          ଜୀବର ପରିତ୍ରାତ
ମୁଁ ଜୀବ ପାଶେ ନିତ୍ୟ ବର୍ତ୍ତମାନ;
ଅଛୁ ମୁଁ ଦେଖି ଧ୍ୟାଇ          ବ୍ରହ୍ମାଣ୍ଡ ପ୍ରାଣ ସାଇଁ
ମୋ ବିନୁ ଜୀବାତ୍ମାର ନାହିଁ ଆନ ।
ପାସୋରି ମୋର ସ୍ନେହ          କେମନ୍ତେ ଧରି ଦେହ
ରହିଛ ବନ୍ଧି ପାପ କ୍ଲେଶମାନ;
ଜାଗ ରେ ଏବେ ବେଗେ          ଆହରେ ପ୍ରାଣାବେଗେ
ସନ୍ତାନେ ଧାଁଇ ମୋର ସନ୍ନିଧାନ ।

---

(ବେହାଗ ଖମ୍ବାଜ—ତେଓରା)

ମୋର ନିଭୃତ ଗୋପନ ମରମେ
ଆସଇ କେ ଆସଇ ।
ପ୍ରେମ ମୋହନ ମଧୁର ପରଶେ
ରସଇ କେ ରସଇ ।
ଏହି ଅପାର ସୁନ୍ଦର ସଂସାରେ
ପଦ୍ମର ସଧୀରେ ସଞ୍ଚାରେ
ଆସଇ କେ ଆସଇ ।
ସ୍ମରୁ ତାରକା କୁସୁମ ସୁହାସେ
ହସଇ କେ ହସଇ ।
ସୁଧା ବସନ୍ତ ଅନିଳ ହିଲ୍ଲୋଳେ
ସାଗର ସୁନୀଳ କଲ୍ଲୋଳେ
ଭାସଇ କେ ଭାସଇ ।
ମୋର ଅନ୍ତର ଗୋପନ ବେଦନେ
ଆସଇ କେ ଆସଇ ।

---

Digitized by srujanika@gmail.com

(ସାହାନା-ଯତ୍)

କାହିଁକି ଭାବନା ଭୟ — କରିବ ରେ ଆଉ,
ରେ ସଂସାର କି ସଙ୍କଟ — କି ଭୟ ଦେଖାଉ ।
ଅଭୟ ଅମୃତ ପଦ — ପ୍ରାଣର ଇଷ୍ଟ ସମ୍ପଦ,
ଲଭିଛି ପରମାଶ୍ରୟ — ଯା ହେବାର ହେଉ ।
ଅସତ୍ୟ ଅନ୍ଧାର ନାଶି — ସତ୍ୟ ଜ୍ୟୋତି ପରକାଶି
କନ୍ଦିଲେଣି ମୋ ପ୍ରାଣେଶ — କଳୁଷ ପଳାଉ ।
ମୋ ପ୍ରଭୁ ପଦ ପରଶେ — ମରଣ ମିଳିଣି ହରଷେ
ଲୁଚିଲେଣି ଲଜ ଭୟ — ରୁ କି ଜାଣି ନାହିଁ ।
ମୋତେ ପ୍ରଭୁ ଦୟାମୟ — ଅନନ୍ତ ଶକ୍ତି ଆଳୟ
ଧରିଛନ୍ତି ବସ୍ତ୍ରାଣେ — ଆହା ପ୍ରେମ ବାହୁ ।
ତାଙ୍କ ସତ୍ୟ ହୃଦେ ଧରି — ତାଙ୍କ ପ୍ରେମେ ଅନୁସରି
ବିସର୍ଜିବି ଏ ପରାଣ — ଯା ଥିବାର ଥାଉ ।

---

(ଝିଞ୍ଝିଟ-ଯତ୍)

ଦେଖାଇଲ କି ହେ ହରି ତୁମ୍ଭ ପ୍ରେମ ପୁଣ୍ୟ ଜ୍ୟୋତି,
ସାର୍ଥକ ହେଲକି ପ୍ରାଣ ଦେଖି ଅରୂପ ମୂରତି ।
ସ୍ୱପ୍ରକାଶ ଦୟାମୟ ଫିଟାଇ ଏହି ହୃଦୟ,
ଦେଖାଇଲ ତହିଁ କେତେ କୁଟୀଳ ପାପପ୍ରସୂତି ।
ହେ ପ୍ରଭୁ ସତ୍ୟନିଧାନ — ଭାଙ୍ଗି ମୋହର ଗୁମାନ,
ଦେଖାଇଲ କି କୁତ୍ସିତ — କଳଙ୍କିତ ଏହି ମତି ।
ଅନୁତପ୍ତ କରି ପ୍ରାଣ — ଡାକୁଅଛି ଭଗବାନ,
ସକଳ ସନ୍ତାପହର ତବ — ଶ୍ରୀଚରଣ ପ୍ରତି ।
କର କର ଆଶୀର୍ବାଦ — ବିନାଶ ମୋହ ପ୍ରମାଦ,
କଳଙ୍କ ଭଞ୍ଜନ ତୁମେ — ଅଗତି ଜନର ଗତି ।

---

Digitized by srujanika@gmail.com

( ରାଗିଣୀ-କଲ୍ୟାଣ )

(ତାଳ-ଯତ୍)

ହରି ନାମ ରସେ ମନ ବୁଡ଼ିଗଲା ରେ ।
ବୁଡ଼ିଗଲା ଆଜ ରସିଗଲା ରେ ।
ଅପୂର୍ବ ରୂପ ଶ୍ରୀହରି    ଦେଖିଲା ନୟନ ଭରି,
ହୃଦରୁ ଆନନ୍ଦ-ବାରି ଉଛୁଳିଲା ରେ ।
ପାପିକି ଏତେ କରୁଣା,    ପାଷାଣ୍ଡକୁ ନାହିଁ ଘୃଣା,
ଆଗେ ଏହା ଜଣାଶୁଣା ନାହିଁ ଥିଲା ରେ ।
ମୁହିଁ ପାପୀ ଅବିଶ୍ୱାସୀ,    ଗୋଡ଼ାଇ ଧଇଲେ ଆସି,
ଏ ପାପ—ହୃଦୟ ଆଜ ଧରାଗଲା ରେ ।

---

( ମିଶ୍ର ଖାମ୍ବାଜ—ମଧ୍ୟମାନ )

ବହି ଏତେ ଧାପାଶ୍ୱର    କେମନ୍ତ ରେ ପ୍ରାଣ ମୋର
ରହିଛୁ ନିଶ୍ଚିନ୍ତ ଏ ସଂସାରେ ।
ପାପେ ତାପେ ନିରନ୍ତର    ଦେହ ମନ ଜରଜର
ଦେଖ ରେ ଅନାଇ ଦେଖ ବାରେ ।
ବିଷମ ଅବସ୍ଥା ଘୋର    ଜଡ଼ତା ନିରାଶା ଘୋର
ଘୋଟିଛି ହୃଦୟ ଅନ୍ଧକାରେ ।
ଆସକ୍ତର ପ୍ରେମେ ମାତି    କାଟୁଛୁ ରୁ ଦିବାରାତି
ନ ଚେତିଲୁ ବିଷମ ବିକାରେ ।
ତାରିବାକୁ ତୋତେ ହରି    ଡାକୁଛନ୍ତି ଦୟା କରି
ଯେନରେ ଶରଣ ତାଙ୍କଠାରେ ।
ପଡ଼ିରହ ପାଦତଳେ    ତାଙ୍କର କରୁଣା ବଳେ
ଅନାୟାସେ ଯିବୁ ଭବପାରେ ।
ନାହିଁରେ ଉପାୟ ଆନ    ବିନା ହେ କୃପାନିଧାନ
ସମର୍ପି ସେ ପଦେ ଆପଣାରେ ।
ଧନ୍ୟ ହେବ ଦେହ ମନ    ଧନ୍ୟ ହେବ ଏ ଜୀବନ
ତାଙ୍କ ପ୍ରେମ କରୁଣା ଆଶାରେ ।

---

Digitized by srujanika@gmail.com

(ବଙ୍ଗଳାଶ୍ରୀ)

ତୁମ୍ଭ କୃପା ମୂର୍ତ୍ତି ଏହ୍ନ ବସୁନ୍ଧରା
ବିଶ୍ୱ ପୂର୍ଣ୍ଣ ତୁମ୍ଭ ପ୍ରେମେ,
ପ୍ରତିକ୍ଷଣ ହରି କରୁଣାରେ ଭରି
ଭୁବନ ପାଳୁଛ ପ୍ରେମେ ।
ଏ ନବ ପ୍ରଭାତେ ଯୋଡ଼ି ବେନି ହାତେ
ଡାକଇଁ ଆକୁଳ ପ୍ରାଣେ,
ଦିଅ ଦରଶନ ନାଥ ନିରଞ୍ଜନ
ରଖ ଦୀନେ ସନ୍ନିଧାନେ ।
ମହିମାର ଜୟ ଆହେ ପ୍ରେମମୟ
ଦେଖାଅ ବାରେ ଏ ପ୍ରାଣେ,
ବିନାଶି ଆସକ୍ତି ଦିଅ ପ୍ରେମ ଭକ୍ତି
ନେଇଯାଅ ଶାନ୍ତିଧାମେ ।

---

( ପିଲୁ—ଏକତାଳ )

ବିଶ୍ୱବାନ୍ଧବ ପ୍ରଭୁ ମୋହନ ହେ,
ରଖ ଅନାଥ ଜନେ କୃପା ବିତରି ହେ ।
ଦେଖୁଅଛ ଏ ଜୀବନ କଳଙ୍କମୟ,
କୁ ବାସନା ପାପ—ପାଶେ ପଡ଼ି ଅଥୟ,
ରହିଅଛ ଅନାଇ ଆହେ ବ୍ରହ୍ମାଣ୍ଡ ସାଇଁ
ଜାଗେ କମ୍ପିତ ପ୍ରାଣ ଭୁଲିଛି ଦିଶୁନାହିଁ,
କାହିଁ ଲୁଚିବ ଯାଇଁ କପଟ ହେ ।
କ୍ଷମାକର ଦୀନଜନେ କ୍ଷମାସାଗର,
କେ ବୁଝିବ ତୁମ୍ଭବିନା ଦୁଃଖ ମୋହର,
କେହିତ ନାହିଁ ଭବେ କୃପା କରିବେ ଲବେ,
ତେଣୁ ଡ଼ାକଇ ଦୁଃଖୀ ଘୋର ଆରତ ରବେ,
ରଖ ହେ ପ୍ରଭୁ ମୁହିଁ ତୁମ୍ଭର ହେ ।

---

Digitized by srujanika@gmail.com

(ଝିଞ୍ଝିଟ-ଖମ୍ବାଜ-ଯତ୍)

ଏ ଜୀବନ ଦେଖ ପ୍ରଭୁ କେମନ୍ତ ଅସାର
ଫଳହୀନ ତରୁ ସମ ଧରଣୀର ଭାର ।

କାମ କ୍ରୋଧ ଲୋଭ ମୋହେ    ସଦା ଏ ହୃଦସ୍ତ ଦହେ
ପୋଡ଼ିଅଛି କୁଟିଳତା ଦ୍ୱେଷ ଅହଂକାର ।

ଏହି ଯେ ଜୀବନ ମନ    ରହିଅଛି ଅଚେତନ
ଗ୍ରାସିଛି ତାହାକୁ ପ୍ରଭୁ ବିଷମ ବିକାର ।

ଅହେ ପ୍ରଭୁ ଦୟାମୟ    ଅନାଥ ଜନ ଆଶ୍ରୟ
ଫେଡ଼ ଏ ଦୁର୍ଗତି ମୋର କୃପାପରିବାର ।

---

(ଶଙ୍କରାଭରଣ-ଆଠତାଳୀ ।)

ପାପର ଜ୍ୱାଳା କେତେ ସହିବି ହେ,
କା ଆଗେ ଦୁଃଖ ମୋର କହିବି ହେ ।

ରିପୁର ନିର୍ଯ୍ୟାତନ    ପାପ ତାପ ଦହନ
ପ୍ରାଣେ ଅନର୍ଥ କେତେ ବହିବି ହେ ।

ଯାଉଛି ଦିନ ବନ୍ଧୁ    କହ କେମନ୍ତ ହରି
ଏ ପାପ ପାଶୁଁ ମୁକ୍ତ ହୋଇବି ହେ ।

ଲଭିବି ଶୁଭ୍ର ପ୍ରାଣ    ହେବ ଜ୍ୱାଳା ନିର୍ବାଣ
ଶ୍ରୀପଦ ଛାୟାତଳେ ରହିବି ହେ ।

---

Digitized by srujanika@gmail.com

(ଗାଥା-ତାଳଯନ୍ତ୍ର)

ସଂସାର ତାପେ ତାପିତ ମନ,
ଦିଅ ବାରେ ଦରଶନ ଅଧମ-ତାରଣ ।
ଜଳୁଅଛୁ ମୋର ପ୍ରାଣ, କରୁଣାବାରି କର ଦାନ ।
ଧନ ଜନ ଯଶ ମାନ, ଚିର ନୋହେ କଦାଚନ,
ବୃଥା ଏ ଜୀବନ ଯୌବନ,
ତୁମ୍ଭ ବିନା ଅକାରଣ ।
ବିନା ତୁମ୍ଭ ପ୍ରେମାନନ ବାଞ୍ଛା ମୋର ନାହିଁ ଅନ୍ୟ,
ନିଶ୍ଚଳେ କରିବି ଦର୍ଶନ,
ନେଲିଟି ଚରଣେ ଶରଣ ।

---

( ଟେଡ଼-ଆଠତାଳ )

ଘୋଟି ଆସୁଅଛୁ ଅନ୍ଧାର ହେ,
ଆସ ହେ ଜ୍ୟୋତିର ଜ୍ୟୋତି,
ହୃଦୟ-କୁଟୀରେ ପୁଣ୍ୟାଶ୍ରମ ରଚି
ବାସ କର ବିଶ୍ୱପତି
ତୁମ୍ଭେ ଥିଲେ ପାଶେ କି ଭୟ କାହାକୁ,
ଲଙ୍ଘିବି ସବୁ ବିପତ୍ତି ।
ଦୁଷ୍ଟ ରିପୁ ବଳ ହୋଇବେ ନିର୍ମୂଳ
ନିର୍ମଳ ହୋଇବ ମତି ।
ତୁମ୍ଭ ପ୍ରେମ ମୁଖ ଦେଖି ପାଶୋରିବି
ଅସାର ବିଷୟ-ପ୍ରୀତି ।
ତୁମ୍ଭର ଆଦେଶ ଭକ୍ତି ଯୋଗେ ପାଳି
ଲଭିବି ପୁଣ୍ୟ ସମ୍ପତ୍ତି ।
ଚିରକାଳ ମୋର ହୃଦେ ବାସ କର,
ନାଶ ମୋର ପାପମତି ।
ସଂସାରର ବୃଥା ମୋହ ଦୂର କର
ଦିଅ ବନ୍ଧନ ମୁକତି ।

---

Digitized by srujanika@gmail.com

(ରାଗ ଭୈରବ-ତାଳ-ଝଂ)

ଜୟ ଜଗ ବନ୍ଦନ ଜଗ ଜନ ଜୀବନ,
ଜୟ ଜୟ ଜଗଦ୍ଧିତକାରୀ ।
ଜୟ ଦୁଃଖ ଭଞ୍ଜନ, ନିତ୍ୟ ନିରଞ୍ଜନ,
ବିଘ୍ନ ବିନାଶନ କାରୀ ।
ଜୟ ଶିବ ଶଙ୍କର, ମହାମହେଶ୍ୱର,
ରିପୁକୁଳ-ସଂହାରକାରୀ,
ଜୟ ଜୟ ସୁନ୍ଦର, ମୂର୍ତ୍ତି ମନୋହର,
ମାନସ-କ୍ଷେତ୍ର- ବିହାରୀ ।
ସତ୍ୟ ସନାତନ ଆଦ୍ୟ ପୁରାତନ,
ପାତକ ନାଶନ କାରୀ ।
ଜୟ ଜଗତାରଣ ଶୋକ ନିବାରଣ
ସନ୍ତାନ-ସନ୍ତାପହାରୀ ।
ଅନ୍ତର ଯାମୀ, ଅନ୍ତର ସ୍ୱାମୀ,
ଅନ୍ତ-ବିହୀନ ଅଧିକାରୀ ।
ବାନ୍ଧି ପ୍ରେମ ପାଶେ ରଖ ଦୀନ ଦାସେ,
କର-ପ୍ରେମ ପାଦ ଭିକାରୀ ।

---

(ତୋଡି—ଆଠତାଳି)

ଦୟାସାଗର ହେ ଦେଖାଦିଅ ଅଛ କାହିଁ,
ଜାଣିଅଛ ପ୍ରଭୁ ତୁମ୍ଭ ବିନା ଆଉ ଏ ପାପୀର ଗତି ନାହିଁ ।
କାତର ପ୍ରାଣରେ ଆହେ ଦୀନବନ୍ଧୁ ଡାକୁଅଛୁ ଆଜ ମୁହିଁ,
ପୂର୍ଣ୍ଣକର ଆଶା ପତିତ-ପାବନ ହୃଦୟରେ ଭକ୍ତି ଦେଇ ।
କାହିଁ ନାହିଁ ସୁଖ ହୃଦୟ ଦୁଃଖରେ ଭ୍ରମୁଛି ବ୍ୟାକୁଳ ହୋଇ,
ଫେଡ଼ ମୋ ସନ୍ତାପ ସନ୍ତାପ-ନାଶନ ଶାନ୍ତି-ଜଳେ ଚିତ୍ତ ଧୋଇ ।
ଦୀନଜନଙ୍କର ଅଟ ହେ ସଙ୍ଖାଳି ଦିଅ ତେଣୁ ପଦଛାଇ,
ଦିନ ଯାଉ ମୋର ଆହେ ଦୀନବନ୍ଧୁ ତୁମ୍ଭ ଶ୍ରୀଚରଣେ ରହି ।

---

Digitized by srujanika@gmail.com

( ରାଗିଣୀ ବେହାଗ, ତାଳ—ଆଡ଼ା )

କାହିଁଅଛ ପ୍ରାଣନାଥ ଦୟାମୟ ହରି,
ପଡ଼ି ଏ ଭବସାଗରେ ଯାଉଛି ମୁଁ ସରି ।

ଘଡ଼ଣ ପାପ ସାଗରେ ଡାକୁଛି ମୁଁ କାତରେ
ଉଦ୍ଧାର ହେ ଦୀନବନ୍ଧୁ କେଶ ମୋର ଧରି ।

ପଡ଼ିଛି ମୃତ୍ୟୁ ସଙ୍କଟେ କେହି ନାହିଁ ମୋ ନିକଟେ,
ତୁମ୍ଭେ ଥାଇଁ ଥାଇଁ ନାଥ ହେଲି ଏତେ ସରି ।

ମାଗୁଛି ଚରଣାଶ୍ରୟ ଦୟା କର ଦୟାମୟ,
ପାପ-ଶତ୍ରୁ ଏ ହୃଦକୁ ଅଛଇ ଆବୋରି ।

---

( ଟୋଡ଼ି—ଆଠତାଳି । )

ଦୟାସାଗର ହେ ଉଦ୍ଧର ଏ ପାପିଜନେ,
ଦରିଦ୍ରର ଆଶା କର ହେ ସଫଳ ପୁଣ୍ୟରତ୍ନ ବିତରଣେ ।

ଆହା ! ତୁମ୍ଭର ଭଣ୍ଡାର ଅକ୍ଷୟ ଅପାର
ପାଳୁଛ କୋଟି ଭୁବନେ,
ବ୍ୟାକୁଳ ହୃଦୟେ କରୁଅଛୁ ଭିକ୍ଷା
ବିମୁଖ ନ କର ଦୀନେ ।

ତୁମ୍ଭ ଶ୍ରୀଚରଣ ଦୁଃଖିର ସର୍ବସ୍ୱ
ଦିଅ ସେହି ଇଷ୍ଟଧନେ,
ସେ ସମ୍ବଳ ଦେଇ ଏ ଭବ-ଜଳଧି
ତରିବି ନିର୍ଭୟ ମନେ ।

---

Digitized by srujanika@gmail.com

( ଆଲେହିଆ—ଢିମେ ତେତାଲ । )

ଦୁଃଖୀ ଡାକୁଛୁ ଆକୁଳେ,
ଦୟାକର ଦୀନବନ୍ଧୁ ଭାସିଗଲି ଭବଜଳେ ।
ଭବଜଳ ତରଙ୍ଗରେ ବିଷୟ-ଲହରୀ ଖେଳେ,
ଚେତନାକୁ ବାରମ୍ବାର ନାଶଇ ହେଳେ ।
ଅକାରଣେ ନାଶ ଗଲି କୁସଙ୍ଗ ମେଳେ,
ରଖ ରଖ ରଖ ପ୍ରଭୁ ତୋର ପଦତ ବାଳେ ।
ଉପାୟ ନ ଦେଖି କାହିଁ, ଦୁଃଖ ଜଣାଉଛୁ ମୁହିଁ,
ପାପ-ତାପେ ଦାଉ ଦାଉ ହୃଦୟ ଜଳେ,
ତୁମ୍ଭ ବିନା କେ ଉଦ୍ଧାରେ ନ ଦେଖି ତୋଳେ,
ମୁହିଁ ଦୀନଜନ ମୋତେ କର କରୁଣା ହେଳେ ।
ଦୁଃଖିଙ୍କ ଦୁଃଖ-ଭଞ୍ଜନ କରୁଛ ହେ ସନାତନ,
ଜଗତେ ବୋଲନ୍ତି ଦୟାନିଧି ସକଳେ,
କେତେ କେତେ ମହାପାପୀ ତାରିଲି ହେଳେ,
କୃପାକର କୃପାନିଧି କୃପାରେ ଧରି କୋଳେ ।

---

(ସିନ୍ଧୁମିଶ୍ର—ଏକତାଲ)

ଜୟ ଦେବ ଜୟ ଦେବ ଜୟ ମଙ୍ଗଳଦାତା
ପ୍ରଭୁ ମଙ୍ଗଳଦାତା,
ପରମ ପିତା ମାତା ପରମ ପିତା ମାତା
ଭୁବନ ବିଧାତା ।
ଅଖଣ୍ଡ ତବ ମହିମା କୋଟି ବିଶ୍ୱପାତା
ପ୍ରଭୁ କୋଟି ବିଶ୍ୱପାତା,
ମଙ୍ଗଳ ସୁନ୍ଦର ହରି ମଙ୍ଗଳ ସୁନ୍ଦର ହରି
କରୁଣାମୟ ତ୍ରାତା ।
କୋଟିବିଶ୍ୱବନ୍ଦିତ ସୁନ୍ଦର ତବ ଚରଣେ
ପ୍ରଭୁ ସୁନ୍ଦର ତବ ଚରଣେ,

Digitized by srujanika@gmail.com

ଧ୍ୟାୟି ନାଥ ହୃଦୟେ    ଧ୍ୟାୟି ନାଥ ହୃଦୟେ
ପାମର ମୁହିଁ ପ୍ରଣମେ ।
ଦୀନଜନ ବତ୍ସଳ ହେ    ମାଗେ ଶରଣ ଦ୍ୱାରେ
ପ୍ରଭୁ ମାଗେ  ଶରଣ ଦ୍ୱାରେ,
ମୁହିଁ ମୂଢ଼ ଅପରାଧୀ    ମୁହିଁ ମୂଢ଼ ଅପରାଧୀ
କ୍ଷମାକର କରୁଣାରେ ।

---

ବ୍ରହ୍ମ ପଦତଳେ ପ୍ରାଣ କର ସମର୍ପଣ ରେ,
ବିଳମ୍ବ ନ କର ଆୟୁ ଗଲା ଏ ଜୀବନ ରେ ।
ଛାଡ଼ି ପାପାସକ୍ତି ସଦା ସେ ପଦେ ମଜିବୁ ରେ,
ଲଭି ନବ ପ୍ରାଣ    ନିତ୍ୟ ଶାନ୍ତିଧାମ
ସଂସାରେ ଜୀବ ଯିବୁ ରେ ।
ବ୍ରହ୍ମ ପୁଣ୍ୟାନଳ ସଦା ଲାଗିବ ଜୀବନ ରେ
ହେବ ରେ ସବଂଶ    ପାପାସୁର ଧ୍ୱଂସ,
କ୍ଷଣକେ ମହାଦହନରେ ।
ବିଷୟ-ଗରଳ ତେଜ ବ୍ରହ୍ମ ପ୍ରେମାମୃତ ରେ
ପାନ କର ସୁଖେ    ବ୍ରହ୍ମନାମ ମୁଖେ
କି କରିବ କାଳଦୂତରେ ।

---

(ଝିଁଝିଟ—କାଓ୍ୱାଲି)

ସୁଖେ ପ୍ରାଣ ସଖା ସଙ୍ଗେ ପ୍ରାଣ ରହରେ ମୋହର,
କି ମଧୁର ପୁଣ୍ୟାନନ୍ଦ ପ୍ରେମେ ଭୁଞ୍ଜ ନିରନ୍ତର ।
ଡାକ ସେହୁ ପ୍ରାଣେଶ୍ୱରେ    ଥାଇ ତାଙ୍କ ସଙ୍ଗତରେ
ଅର୍ପି ପ୍ରାଣ ସେ ପଦ୍ମରେ ଦୁଃଖ ଭୟ ପରିହର !
ସଙ୍କଟମୟ ସଂସାରେ    ମୋହ-ଘନ-ଅନ୍ଧକାରେ
ନିର୍ବିଘ୍ନେ ରଖିବେ ପ୍ରଭୁ ସର୍ବ କଷ୍ଟବିଘ୍ନହର ।

Digitized by srujanika@gmail.com

ହେ ପ୍ରେମ ସୁନ୍ଦର ହାସ     ସର୍ବଭୟ କର ନାଶ
ଭଜନର ଚଞ୍ଚଳପ୍ରାଣ କାନ୍ଦି ଭାବ ଦଶାନ୍ତର ।

---

(ମୂଲତାନ—ଯତ୍)

ହେ ବିଶ୍ୱବନ୍ଦନ ବାରେ ତୁମ୍ଭର ପ୍ରକାଶେ
ଫୁଟାଅ ଏ ପ୍ରାଣ-ପଦ୍ମ ଅପୂର୍ବ ବିକାଶେ ।

ହେ ଅପୂର୍ବ ଦରଶନେ     ପୁଲକ ପୂରିତ ମନେ
ଆନନ୍ଦ ସଙ୍ଗୀତ ଫୁଟୁ ଅମୃତ ଉଚ୍ଛ୍ୱାସେ ।

ହେ ଗୀତ ଉନ୍ମାଦ ସ୍ରୋତେ     ନଶ୍ୱର ନଶ୍ୱର ମୋତେ
ଯେବେ ଯାଅ ଯଥା ଇଚ୍ଛା ନାଶି ପାଶ ଝାସେ ।

---

(ବେହାଗ—ଯତ୍)

ହେ ସୁନ୍ଦର ମନୋହର     ପରମେଶ୍ୱର ।
ହୃଦୟ ମନ୍ଦିରେ ମମ
ପାତ ତବ ପ୍ରେମାସନ,
ବିରାଜ ସତତ ନିତି     ହେ ପ୍ରେମାକର
ତୁମ୍ଭେ ମୋ ପରମ ପଦ
ତୁମ୍ଭେ ମୋ ସର୍ବ ସମ୍ପଦ
ତୁମ୍ଭେ ମୋ ସାଧନ ଧନ     ମୁକ୍ତି ମୋହର
ତୁମ୍ଭେ ମୋ ପରମ ଗତି
ତୁମ୍ଭେ ମୋ ଶାନ୍ତି ଶକତି
ହରଷ ବିଶ୍ୱାସ ଆଶା     ପ୍ରେମ ସାଗର ।

---

Digitized by srujanika@gmail.com

(ରାଗିଣୀ—ଜୟଜୟନ୍ତୀ)
(ତାଲ—ଯତ୍)

ମୋହନ ରୂପଧ୍ୟାନରେ ବୁଡ଼ ରେ ମନ,
ନ ଥିବ ସଂସାର ତାପ, ହେବ ପାପ ମୋଚନ ।

ସେହି ଜଗତଜୀବନ, ତାଙ୍କ ବିନା ନାହିଁ ଅନ୍ୟ,
ତାରଣ କାରଣ ସେହି ବିପଦ ବିନାଶନ ।

ସେହି ସତ୍ୟ ସେହି ନିତ୍ୟ, ସେହି ଆଦି ସେହି ଅନ୍ତ,
ସେହି ତ୍ରିଭୁବନ ବ୍ୟାପ୍ତ, ଭକ୍ତ ପ୍ରାଣ ଧନ ।

ଅପାର ଅଗମ୍ୟ ସେହି, ଇଚ୍ଛାରେ ସୃଜିଲେ ମହୀ,
ପ୍ରେମ ଦଣ୍ଡ କରେ ନେଇ କରୁଛନ୍ତି ପାଳନ ।

---

(ବାହାର—ଏକତାଲା)

ଦେଖିଲେ ତୁମ୍ଭର ଲୀଳା ସଖା ହେ, ଏହି ଜୀବନେ
ଦ୍ରବଇ ପାଷାଣ ପ୍ରାଣ ଅଶ୍ରୁ ଗଳଇ ଲୋଚନେ ।
ରୋଗ ଶୋକ ତାପେ ପ୍ରଲୋଭନ ପାପେ
ଏ ପ୍ରାଣେ ରହି ଗୋପନେ
ଦେଖିଛ ଦରଧ ହୃଦୟ ବେଦନା
ଶୁଣିଛ ଦୁଃଖୀ କ୍ରନ୍ଦନ ;
ଶୀତଳ କରୁଛ ପ୍ରାଣ ତାର, ଅମୃତ ଶାନ୍ତି ସିଞ୍ଚନେ ।

ନ୍ୟାୟ ଦଣ୍ଡ ଧରି ବସିଅଛ ହରି
ତୁମ୍ଭର ଧର୍ମ୍ମ ଆସନେ;
କରୁଛ ପ୍ରହାର ଲଭୁଛି ଉଦ୍ଧାର
ଅପରାଧୀ ତବ ଶାସନେ ;
ଧନ୍ୟ ମୋର ମନ ପ୍ରାଣ ତୁମ୍ଭର ଲୀଳା ଦର୍ଶନେ ।

---

Digitized by srujanika@gmail.com

(ଭୂପାଳୀ—ଏକତାଳ)

ତବ ଆନନ୍ଦ ମଞ୍ଜୁଳ ଜାଗେ
ମୋର ପ୍ରଫୁଲ୍ଲ ଆଖି ଆଗେ ।
ଫୁଲ୍ଲ ପ୍ରସୂନ ଶୋଭାରେ
ପୂର୍ଣ୍ଣଚନ୍ଦ୍ର ବିଭାରେ
ତବ ପୁଣ୍ୟ ପରଶ ଲାଗେ ।
ନୃତ୍ୟ କରେ ମୋ' ସର୍ବ ହୃଦୟ,
ଦୀପ୍ତ ଅନୁରାଗେ ।
ପ୍ରାଣେ ତବ ହେ ପରମ ଶାନ୍ତି
ଅଙ୍ଗେ ତବ ହେ ପୁଲକ କାନ୍ତି
ବିଶ୍ୱ ଭୁବନ ହର୍ଷେ ଉଚ୍ଛୁଳେ
ନିତ୍ୟ ନୂତନ ରାଗେ ।

---

(ଇମନ କଲ୍ୟାଣ—ତେଓରା)

ହୃଦୟ ମନ୍ଦିରେ ଚିର ସୁନ୍ଦର    ରାଜ ଚିର ରାଜ ହେ
ପରାଣଛନ୍ଦେ ଗାଅ ଆନନ୍ଦେ ମାନସ ମୁରଜେ ବାଜ ହେ ।
ନୀଳ ପୟୋଧି ଲୋଳ କଲ୍ଲୋଳେ,
ମନ୍ଦ ମାରୁତ ଗନ୍ଧ-ହିଲ୍ଲୋଳେ,
ପିକ ପଞ୍ଚମେ, ଅଳି ଗୁଞ୍ଜନେ, ବୀଣା ବଂଶୀରେ ବାଜ ହେ ।
ନୈଶ ଅମ୍ବର ତାରକା ଶଶୀ
ପ୍ରଫୁଲ୍ଲ ପୁଷ୍ପ ସୁଷମାରାଶି
ଶତ ନିର୍ଝର ଗିରି ପ୍ରାନ୍ତର
ଶୋଭା ବିଭାରେ ରାଜ ହେ ।
ତବ ମଙ୍ଗଳ ପୁଣ୍ୟ ସ୍ପର୍ଶେ
ଜାଗ ଅନ୍ତର ଅମଳ ହର୍ଷେ,
ହର ସନ୍ତାପ ଦୁଃଖ ଦୈନ୍ୟ
ତୀବ୍ର ଯାତନା ଲାଜ ହେ ।

---

Digitized by srujanika@gmail.com

( ମୂଲତାନ—ଆଡ଼ାଠେକା )

ଅନେକଦୂ ଆସିଅଛୁ ମହାପ୍ରଭୁ ତୁମ୍ଭ ଦ୍ୱାରେ
ଏକମାତ୍ର ଆଶ୍ରା ତୁମ୍ଭେ ଭୟାବହ ଏ ସଂସାରେ ।
ପାପର କୁହୁକେ ମଜ୍ଜି ତୁମ୍ଭ ଶ୍ରୀଚରଣ ତେଜି
ଭ୍ରମିଛୁ ହେ କେତେ କାଳ ମାତି ଅନିତ୍ୟ ସଂସାରେ ।
ଦଗଧ ହୋଇ ପାପାନଳେ ବୁଡ଼ିଛୁ ନୈରାଶ୍ୟ-ଜଳେ
କାଟିଅଛୁ ଦିନ ପ୍ରଭୁ ଦୁଃଖମୟ ହାହାକାରେ ।
ଜାଣିଅଛୁ ତୁମ୍ଭେ ପୁଣ ଧନ୍ୟ ତବ କୃପାଗୁଣ
ଶ୍ରୀପଦ ଆଡ଼କୁ ପ୍ରଭୁ ନ ଚଳ ଆଶା-ଦଣ୍ଡାରେ ।
ପୁଣି ହେ କେମନ୍ତେ ହରି ତୁମ୍ଭ ପଦ ପରିହରି
ପଡ଼ିଅଛୁ ଦୁର୍ବିପାକେ ବିଷମ ପାପ ବିକାରେ ।
ଏହିପରି କେତେ ଦିନ କାଟିବ ଏ ଦୀନହୀନ
ଚରଦିନ ପାଇଁ ଏବେ ଉଦ୍ଧାର କୃପାରେ ।
ଶ୍ରୀପଦେ ରଖ ମୋ ମତି ହେ ହରି ବ୍ରହ୍ମାଣ୍ଡପତି
ଉଦ୍ଧାର ଅଧମ ଜନେ କାଢ଼ି ମୋହ ଅନ୍ଧକାରେ ।
ଏ ଜୀବନ ଏ ଭବନେ ପାଦେ କଲୁ ସମର୍ପଣ
ସୁମତି ଦିଅ ହେ ନାଥ ଏହି ଦୀନ ପରିବାରେ ।

---

( ପଞ୍ଚମ ବାହାରୀ—ତିପଟା )

ଧନ୍ୟ ହେ ମଙ୍ଗଳମୟ, ନିଖିଳ ଭୁବନାଶ୍ରୟ,
ଭକତର ବାଞ୍ଛାକଳ୍ପତରୁ ।
ପ୍ରେମାନନ୍ଦ ସୁଧାଝର ଝରୁଅଛୁ ନିରନ୍ତର
ତୁମ୍ଭ ଶ୍ରୀଚରଣ କମଳରୁ ହେ ମହାପ୍ରଭୁ ।
ଅନାଥଶରଣ ପିତା ମାତା
ଅଗତି ଜନର ପରିତ୍ରାତା
ସଂସାର ଜଳଧି ସେତୁ ପୁଣ୍ୟ ଶାନ୍ତିମୁକ୍ତି ହେତୁ
ଏକା ତୁମ୍ଭେ ସର୍ବସୁଖଦାତା ହେ ମହାପ୍ରଭୁ ।
ଜାଣିଛୁ ତୁମ୍ଭେ ମୋହର ଅଟ ହେ ହୃଦୟେଶ୍ୱର
ଆସ ଆସ ହେ ହୃଦେ ବହନ,

Digitized by srujanika@gmail.com

ଚଞ୍ଚଳ ବାସନାଦଳ　　ଶତ୍ରୁବର୍ଗ କୋଳାହଳ
ଏ ହୃଦରୁ କରୁ ପଳାୟନ, ହେ ମହାପ୍ରଭୁ ।
ସର୍ବପାପ-ସନ୍ତାପ-ହରଣ
ଅଟେ ତବ ଅଭୟ ଚରଣ
ଆନନ୍ଦେ ହୃଦ-କୁଟୀରେ　　ନୀରବେ ନୟନ ନୀରେ
ଏକାନ୍ତେ ପୂଜିବି ଅନୁକ୍ଷଣ ହେ ମହାପ୍ରଭୁ ।
ପଦତଳେ ବସିବାର　　କେଡ଼େ ବଡ଼ ଅଧିକାର
ଦେଇଛ ଏ ଦୀନ ହୀନ କାଟେ,
ନମେନ୍ଦୋ ବସନ୍ତେ ତହିଁ　　ଭୂଷିତ ହଣଇ ମୁହିଁ
ଜ୍ୟୋତିର୍ମୟ ଅମର-କିରୀଟେ ହେ ମହାପ୍ରଭୁ ।
ଫୁଟଇ ମୋ ମନ-ଶତଦଳ
ପୂରେ ପ୍ରାଣ ପୁଣ୍ୟ-ପରିମଳ
ଅନାଇଲେ ତୁମ୍ଭ ମୁଖେ　　ହୁଏ ହୃଦ ସ୍ୱର୍ଗସୁଖେ
ବିସ୍ତାରିତ ପ୍ରସନ୍ନ ବିମଳ ହେ ମହାପ୍ରଭୁ ।

---

( କୀର୍ତ୍ତନ-ଏକତାଳ )

ଦଶ ଦିଗ ପୂର୍ଣ୍ଣ କରି　　ମହା ଆବର୍ତ୍ତେ ହରି
ବିରାଜିଛ ନିଜ ମହିମାରେ,
ସେ ଗମ୍ଭୀର ଆବର୍ତ୍ତେ　　ବୁଡ଼ିବି ଗମ୍ଭୀର ଭାବେ
ଜଳେ ମୀନ ଯେମନ୍ତ ପ୍ରକାରେ ।
ଜଡ଼ତା-ଅନ୍ଧାର ନାଶି　　ଜ୍ଞାନ-ଜ୍ୟୋତି ପରକାଶି
ଶୁଦ୍ଧ ତତ୍ତ୍ୱ ପ୍ରେମର ସଞ୍ଚାରେ,
ଏ ପାଷାଣ୍ଡ ଜନେ ହରି,　　ପ୍ରେମିକ ଭକତ କରି
ମଗ୍ନକର ପୁଣ୍ୟ-ପାରାବାରେ ।

---

ସିନ୍ଧୁ ଭୈରବୀ-ଯୋତ୍ର ।

ଆସକ୍ତି ବାସନା ତେଜି　　କେବେ ଯିବ ଯୋଗଧାମେ,
ଅନନ୍ତ ଇଚ୍ଛା ଚରଣେ ବଦଳିବି ସର୍ବକାମେ ।
ସେ ଇଚ୍ଛା ସଙ୍ଗତେ ଯୁକ୍ତ　　ତେଣୁ ମୁଁ ହୋଇବି ମୁକ୍ତ,
ଭୁଞ୍ଜିବି ଆନନ୍ଦ ଶାନ୍ତି ଗାଇ ସେ ପବିତ୍ର ନାମେ ।

Digitized by srujanika@gmail.com

ରିପୁ ଦଳର ଦାସତ୍ୱ ପରିହରି ଶୁଦ୍ଧ ସତ୍ତ୍ୱ
ହିରଣ୍ମୟ ହୃଦାସନେ ପୂଜିବ ପ୍ରେମ ବିଧାନେ ।
ନିରନ୍ତର ଅନୁଗତ ପାଳିବ ସନ୍ତାନ ବ୍ରତ
ସଂସାରେ ସ୍ୱର୍ଗବାସ ଲଭିବ ହେ ପରିଣାମେ ।

---

(କାଲାଂଡ଼ା—ଏକତାଲୀ)

ଡାକ ଶୁଣ ହେ ମୋହର,
ତୁମ୍ଭ ବିନା ନାହିଁ କେହି ଦୁଃଖୀ ଜନର ।
ନିଜ ବଳେ ତରିବାକୁ ସଂସାର ସାଗର
ଭାଳିଥିଲି, ଭାଜିଗଲା ସେ ଦମ୍ଭ ନିକର ।
ସେ ସିନ୍ଧୁ ଲହରୀ ମଧ୍ୟେ ଜୀବନ ମୋହର
ବିକଳେ ଭାସୁଛି ଦେଖ ଆହେ ପ୍ରାଣେଶ୍ୱର ।
ହଜି ଯାଇଅଛି ବୁଦ୍ଧି ନିରାଶ କାତର
ମାଗଇ ଶରଣ ଧରି ଅଭୟ ପୟର ।

---

(ଲଳିତ—ଆଡ଼ାଠେକା)

ବ୍ରହ୍ମାଣ୍ଡ ଜନନୀ ମାଗୋ କର ପ୍ରାଣ ଅଧିକାର,
ଦେଖାଅ କରୁଣାଲୀଳା ପ୍ରାଣେ ମୋର ଅନିବାର ।
ବହାଅ ଚରଣତଳେ ଘୋଡ଼ାଇ ସ୍ନେହ ଅଞ୍ଚଳେ
ଧୋଇ ନେଇ ଭକ୍ତିଜଳେ ଦେଖାଅ ତୁମ୍ଭ ସଂସାରେ ।
ନିଅ ମୋତେ ପାଶେ ଟାଣି ଶୁଣାଅ ଶ୍ରୀମୁଖ ବାଣୀ
କର ଶଢେ ରାଜଧାନୀ ବିଶ୍ୱରାଣୀ ମନ୍ଦମାର ।
ନିଅ ଏ କଳ୍ପନା ସ୍ଫୂର୍ତ୍ତି ବୁଦ୍ଧି ହୃଦୟ ପ୍ରବୃତ୍ତି
ଶୁଦ୍ଧ କର ଏ ପ୍ରକୃତି ନାଶି ମା ସର୍ବ ବିକାର ।

---

Digitized by srujanika@gmail.com

( ବଙ୍ଗଳା ଶ୍ରୀ । )

ଗଭୀର ବିଷାଦେ ଘୋର ଅବସାଦେ
ଆସିଛୁ ହେ ତବ ପାଶେ,
ଦୟା କର ହରି ଦୁଃଖ ତାପ ହରି
ଉଦ୍ଧାର କର ଏ ଦାସେ ।
ଭବ-ପ୍ରବାସର ମୋହ ପ୍ରଲୋଭନେ
ଅସାର ସୁଖ ବିଳାସେ,
ଗଲା ଦିନ ଗୁଳି ଏବେ ଏ ଜୀବନେ
ବିଷାଦ-ସମୁଦ୍ରେ ଭାସେ ।
ସୁଖ-ମରୀଚିକା ପଛେ ଗୋଡ଼ାଇଲି
ପଡ଼ିଲି ନିରାଶାଗ୍ରାସେ,
ଦିଶୁ ନାହିଁ କିଛି କି କରିବି ହରି
ଏ ଘୋର ସଙ୍କଟ ନାଶେ ।
ଦରିଦ୍ର ସମ୍ବଳ ତୁମ୍ଭ ପାଦ-ପଦ୍ମେ
ଦିଅ ସ୍ଥାନ ଏ ହତାଶେ,
ହରି ପାପାଶକ୍ତି ପୂର୍ଣ୍ଣକର ପ୍ରାଣ
ଅମୃତ ଆଶା ଆଶ୍ୱାସେ ।

---

( ବଙ୍ଗଳା ଶ୍ରୀ )

ହୃଦୟ କୁଟୀରେ ଆସ ଦୀନବନ୍ଧୁ
ଆସ ଏ ହୃଦୟ-କୁଟୀରେ,
ପାପର ସନ୍ତାପେ ଅତି ଜର୍ଜ୍ଜରିତ
ଡାକଇ ଦୀନ କାତରେ ।
ବହୁ ଆଶା କରି ଆସିଅଛୁ ଆଜ
ତୀର୍ଥରାଜ ଶ୍ରୀପସ୍ଥରେ ;
ଜାଣିଅଛୁ ପ୍ରଭୁ ସର୍ବ ହାହାକାର
ହେ ପଦ ବିଶ୍ୱ ମଧ୍ୟରେ ।

Digitized by srujanika@gmail.com

ଦୁଃଖୀ ମନୋରଥ  କର ହେ ପୂରଣ
ଉଇଁ ହୃଦୟ-ଅମ୍ବରେ ;
ଦରଶନ ଦଅ  ଜୀବନ ସାର୍ଥକ
ହେଉ ତୁମ୍ଭ ପ୍ରସାଦରେ ।

---

(ଆଶା—ଠୁମରି)

ଭୟଙ୍କର ଭବସିନ୍ଧୁ ହେ ଭୟହାରୀ !
ସାହା ନରଶର  ଆନ କେ ଦୋସର
ହୋଇବ ହେ ତ୍ରାଣକାରୀ ।
ତାପିତ ଜୀବନ  ଶାନ୍ତ ସୁଧାକର
ହେ ମୋହ ଦୁର୍ଦ୍ଦିନ ହାରୀ,
ତୁମ୍ଭେ କୃପାମୟ  ହେଲେ ଉଦ୍ଧାରୁଛ
କୋଟି କୋଟି  ନର ନାରୀ ।
ଘୋର ଭୟାନକ  ସଙ୍କଟରେ ପଡ଼ି
ଡାକଇ ଦୀନ ଭିଖାରୀ
ଆହେ ମହାପ୍ରଭୁ  ତାର ହେ ତାର ହେ
ହର  ସଙ୍କଟ ନିବାରି ।

---

(ଆଶା—ଠୁମରି)

ଅଧମ ତାରଣ  ଭୟ ବିନାଶନ
ଆସ ହେ ହୃଦୟ ଧାମେ,
ମହା ଭୟଙ୍କର  ପାପ ନିଶାଚର
ଗର୍ଜଇ ଘୋର ସଗ୍ରାମେ ।
କାତର ଦୁର୍ବଳ  ଭୀତ ନିଃସମ୍ବଳ
ଡାକଇ ବ୍ୟାକୁଳ ପ୍ରାଣେ,
ପାପାସୁର ଭୟ  ନାଶ ଦୟାମୟ
ତାର ମୋତେ ବ୍ରହ୍ମନାମେ ।

Digitized by srujanika@gmail.com

ଦେଇ ପୁଣ୍ୟବଳ ହୃଦୟ ନିର୍ମଳ
କର ହେ କୃପା ବିଧାନେ,
ଆନନ୍ଦ ଅମୃତ ବିତର ଦନ୍ତ
ପୂର୍ଣ୍ଣ କର ଶବ୍ଦ ପ୍ରେମେ ।

---

(ଚୌତ୍ର—ଆଠତାଳି)

ଘୋଟି ଆସୁଅଛୁ ହେ ଘୋର ଅନ୍ଧକାର ରାତ,
କାହିଁ ଯିବ ପ୍ରଭୁ ଏ ମୋହ ଅନ୍ଧାରେ
ଆସ ହେ ଜ୍ୟୋତିର ଜ୍ୟୋତି ।

ତୁମ୍ଭେ ଥିଲେ ପାଶେ କଭୟ କାହାକୁ
ହେଲେ ଲଂଘିବ ବିପତ୍ତି,
ଦୁଷ୍ଟ ପ୍ରବୃତ୍ତି ହୋଇବେ ନିର୍ମୂଳ
ନିର୍ମଳ ହୋଇବ ମତି ।

ତୁମ୍ଭ ପ୍ରେମ ମୁଖ ଦେଖି ପାସୋରିବ
ଅସାର ବିଷୟ ପ୍ରୀତି,
ତୁମ୍ଭର ଆଦେଶ ଭକ୍ତି ଯୋଗେ ପାଳି
ଶିଖିବ ସୁପୁଣ୍ୟ ରୀତି ।

ଚିରକାଳ ମୋର ହୃଦେ ବାସ କର
ନାଶ ମୋର ପାପମତି,
ବିଷୟର ଘୋର ମୋହ ଦୂର ହେଉ
ଦିଅ ବନ୍ଧନ ମୁକତି ।

---

Digitized by srujanika@gmail.com

( ଲଳିତ-ଆଡ଼ା )

ତୁମ୍ଭ ବିନା ଭାବିବାକୁ  ନାହିଁ କେହି ଆନ,
ପତିତ ପାବନ ତୁମ୍ଭେ  କରୁଣା ନିଧାନ ।
ଆହେ ବ୍ରହ୍ମାଣ୍ଡର ପତି  ତୁମ୍ଭେ ଅଗତିର ଗତି
ଭକ୍ତି-ମହୌଷଧ ପ୍ରଭୁ  କର ମୋତେ ଦାନ ।
ନିର୍ଗୁଣ ମୋର ହୃଦୟ  ନ କହିବ ଦୟାମୟ
ଜାଣୁଛ ନ ଦୁଃଖେ  ପ୍ରଭୁ ଅବସନ୍ନ ପ୍ରାଣ ।
ନାଶି ହୃଦୟ ଅନ୍ଧାର  ଘୋର କଳୁଷ-ସମ୍ଭାର
ବିହନେ ଦର୍ଶନ ଦିଅ  ମଙ୍ଗଳ ନିଦାନ ।

---

( ବେହାଗ ଖାମ୍ବାଜ—ପୋସ୍ତୋ )

ପୂଜଇ ସର୍ବ ଭୁବନ,  ଅନ୍ତ ନାହିଁ ହେ ତାଙ୍କର ।
ଊର୍ଦ୍ଧ୍ୱରେ ମହା ଆକାଶ  ବିସ୍ତାରିତ ଚନ୍ଦ୍ରପାଶ
ନ ପାରେ କରି ପ୍ରକାଶ  ତାଙ୍କ ତତ୍ତ୍ୱ ଅଗୋଚର ।
ନମ୍ନେ ମହାପାରାବାର  ବିଚିତ୍ର ଏହି ସଂସାର
ହେ ଗୁପତ ତତ୍ତ୍ୱକଥା  ନ ଜାଣଇ ଚରାଚର ।
ବେଦ ବେଦାନ୍ତ ପୁରାଣ  ଦର୍ଶନାଦି ଶାସ୍ତ୍ରମାନ
କେହି ସେହି ତତ୍ତ୍ୱଜ୍ଞାନ  ନ ପାଇଲେ ପ୍ରଭୁଙ୍କର ।
ନିରନ୍ତ ସର୍ବ ସଂସାର,  ବୋଲେ ଅଗମ୍ୟ ଅପାର,
ମହିମାର ପାରାବାର  ଭୂମା ଅନନ୍ତ ଈଶ୍ୱର ।

---

( ମୂଲତାନ—ଆଡ଼ାଠେକା )

ଆହ ଅସ ମହଶକ୍ତି ତୁମ୍ଭେ ଦୁର୍ବଳର ବଳ
ମାଗଇ ଶରଣ ଦୁଃଖୀ ଆହେ ଅନାଥବତ୍ସଳ ।
ଅଧମ ଦୁର୍ବଳ ଜନେ  ରଖ ପ୍ରଭୁ ଶ୍ରୀଚରଣେ
ଦିଅ କର ପ୍ରାଣେ ତାର ପୁଣ୍ୟ ତେଜ ସୁବିମଳ ।
ଏ ହୃଦୟ ଦିବାରାତି  ଗାଉ ହେ ଆନନ୍ଦେ ମାତି
ତୁମ୍ଭ ଗୁଣ ପ୍ରେମାଲୋକେ ଅନ୍ତର ହେଉ ଉଜ୍ଜ୍ୱଳ ।

---

Digitized by srujanika@gmail.com

( ଝିଁଝିଟ—ଏକତାଲୀ )

ତୁମ୍ଭେ ହେ ଅତଳସ୍ପର୍ଶ ଅଗାଧ ଅମୃତ ରାଶି,
ପ୍ରାଣ ସେ ଅମୃତେ ବୁଡ଼ି ରହିବାକୁ ଅଭିଳାଷୀ ।
ସେ ଅମୃତ ସରୋବରେ ବୁଡାଇ ଦିଅ ହେ ଥରେ
ହେ ମାଧୁରୀ ଭିତରଇ ଯେ ହେଉ ତ ସ୍ୱରଗବାସୀ ।
ମଜାଇ ସେ ସୁଧା-ହ୍ରଦେ ଭିତରଇ ଦେବ-ହର୍ମ୍ମେ
ରଖିବ କି ସତେ ମୋତେ ଏ ପାପ ସନ୍ତାପ ନାଶି ?

---

( ଝିଁଝିଟି—ଠୁମ୍ରି )

ଧ୍ୟାନକର ପ୍ରାଣ ମମ ସତ୍ୟ ଶିବ ସୁନ୍ଦରେ,
ଦଗ୍ଧ ଚିତ୍ତ ମଗ୍ନ ହୁଅ ଶାନ୍ତି-ସୁଧା-ସାଗରେ ।
ସ୍ନାନକର ତପ୍ତ ପ୍ରାଣ ପୁଣ୍ୟ ସୁଧାନିର୍ଝରେ,
ସେ ଅମୃତ ପାନେ ତୃଷା ତୃପ୍ତକର ନିର୍ଭରେ ।

---

( ଖମ୍ବାଜ—ତେତାଲ )

ଏ ଘୋର ଗହନ ଭବେ ମହାହାହାକାର ରବେ
କାହିଁକି ଭ୍ରମୁଛ ଦଗ୍ଧ ପ୍ରାଣେ ।
କରୁଣା ବରୁଣାଳୟ ବିଧାତା ମଙ୍ଗଳମୟ
ସେ ସତ୍ୟ ସୁନ୍ଦର ସଖା ଛନ୍ତି ସନ୍ନିଧାନେ ।
ଦଗ୍ଧ ପ୍ରାଣର ବିଶ୍ରାମ ଆତ୍ମାର ଆନନ୍ଦଧାମ
ଲୋଡ଼ରେ ବ୍ୟାକୁଳ ଚିତ୍ତେ ସେହି ପ୍ରାଣାରାମେ ।
ଆସରେ ଆସରେ ପାଶେ ଫେଡ଼ିବ ତୋ ଦୁଃଖପାଶେ
ବୋଲି ଡାକୁଛନ୍ତି ସଖା ଶୁଣ ଶୁଣ ଧ୍ୟାନେ ।

---

Digitized by srujanika@gmail.com

(ରାଗ-ମରୁଆ ତାଳ-ଏକ୍ତାଳ)

ଆଜକ ଶୋଭା କଲ ଦର୍ଶନ ।
କୋଟି ପୂର୍ଣ୍ଣଶଶୀ ପ୍ରକାଶିତ ଆସି,
ସଫଳ ମୋର ନୟନ ।
ଭକ୍ତ ସଙ୍ଗେ ପୁଣି ଭଗବାନ
ବିରାଜିତ ହୃଦ-ସିଂହାସନ,
ଜୟ ଜୟ ଜୟ ଜୟ ଦୟାମୟ,
ସାର୍ଥକ ହେଲା ଜୀବନ ।

---

ବ୍ରହ୍ମକୃପାହି କେବଳଂ ଗାଅ ନରନାରୀ,
ବ୍ରହ୍ମକୃପା ବିନା ଗତି ନାହିଁ ହେ କାହାର ।
ଏକ ମାତ୍ର ବ୍ରହ୍ମକୃପା ପାପତାପହାରୀ,
ଯେହି କୃପାବଳେ ଭବସିନ୍ଧୁ ହେବା ପାର ।
ସେହି କୃପା ଜୟ ଗାଅ ଦିବସ ଶର୍ବରୀ,
ଶରଣ ପଶ ହେ ସର୍ବେ ଚରଣେ ତାହାର ।

---

ପ୍ରାର୍ଥନା—ସ୍ରଗ୍ଧରା ଛନ୍ଦ ।

ଅଜ୍ଞାନାନ୍ଧେ ମହେଶ ପ୍ରଭୁ କର କରୁଣା,
ବିଘ୍ନ ସନ୍ତାପ ନାଶ,
ଆଶା ପ୍ରେମେ କୃପାଳୁ ନମଇ ତବ ପଦେ
ପୁଣ୍ୟ-ସୂର୍ଯ୍ୟ ପ୍ରକାଶ ।
ନାମାନନ୍ଦେ ତରାଅ ଅଧମ ଜନ-ଗଣେ
ଶୁଦ୍ଧ ବିଶ୍ୱାସ ଦାନେ,
ମାତା ପିତା ଦୟାଳୁ ରସୁ ହୃଦୟେ ସଦା
ନାଥ ତ୍ୱନ୍ନାମ ଗାନେ ।

---

Digitized by srujanika@gmail.com

(ଆରତି)

ଆରତି କରେ ନରନାରୀ
ପତିତ ପାବନ — ପତିତ-ପାବନ
ସର୍ବଶୁଭକାରୀ ।

ହୃଦୟ ଉଜ୍ଜ୍ୱଳ — ଲଭି ପ୍ରେମଜ୍ୟୋତି
ହେ ମଙ୍ଗଳମୟ — ହେ ମଙ୍ଗଳମୟ
କୋଟି ବିଶ୍ୱପତି ।

ମୁକ୍ତିଦାତା, ତବ — ଚରଣେ ପ୍ରଣତି
ଜୟ ପ୍ରେମମୟ — ଜୟ ପ୍ରେମମୟ
ବିତର ସୁମତି ।

---

(କାମୋଦ—ଆଠତାଳୀ)

ପ୍ରାର୍ଥନା ପ୍ରଭୁ ଚରଣେ ତବ,
ଜାଗିଥାଉ ପ୍ରାଣେ ତୁମ୍ଭ ଉତ୍ସବ ।

ବହାଇ ଅଭୟ ଚରଣ-ପୋତେ
ଭସାଅ ହେ ତୁମ୍ଭ ଆନନ୍ଦ-ସ୍ରୋତେ ।

ବିଶ୍ୱଜନନୀ ତୁମ୍ଭ ଜୟ ନିଶାଣ
ଦରଶନେ ମୁଗ୍ଧ ହେଉ ମୋ ପ୍ରାଣ ।

ଅନନ୍ତ ଗୌରବ ମହିମା ତବ
ଘୋଷୁ ପ୍ରାଣ ନିତ୍ୟ ଦୀନବାନ୍ଧବ ।

ଅମୃତ ଉତ୍ସବ ବିଧାନକାରୀ,
ଢାଳ ହୃଦେ ପୂର୍ଣ୍ଣ ଅମୃତ ବାରି ।

---

Digitized by srujanika@gmail.com

(ରାଗିଣୀ—କାଫି)

ତାଳ—ପହ୍ନପଞ୍ଚ

ଜଗଜ୍ଜୀବନ, ତୁମ୍ଭ ବିନା ନାହିଁ ଜଗତେ ଆନ ।
ତବୁ ଆଶା ମୋର ସଫଳ ଏଥର ଭରସା ତୁମ୍ଭର ଚରଣ ।
ଶୁଣିଛୁ ମୁଁ ନାଥ — ପାପି ତାପିଙ୍କି ତ
ନ ଗୁଡ଼ ଅଧମ ବୋଲଣ,

ସେହି ଆଶା ଧରି — ଡାକୁଛୁ ଶ୍ରୀହରି,
ଏ ଦଶା କର ମୋ ମୋଚନ
ଭିକ୍ଷା ମୋର ଏହି — ଯିବା ଯାଏ ଦେହି
କଣ୍ଠରେ ଜପୁଥିବ ନାମ,
ଭକ୍ତଜନ ସଙ୍ଗେ — ମାତି ପ୍ରେମ ରଙ୍ଗେ
ସୁଖରେ ବଞ୍ଚୁଥିବ ମନ ।

---

(ବିଭାସ—ଝାମ୍ପତାଳ)

ଜୟ ଜୟ ବିଶ୍ୱପତି ଜୟ ହେ ପ୍ରାଣ ଆଧାର,
ଏ ଦେହ ହୃଦୟ ବୁଦ୍ଧି କର କର ଅଧିକାର ।

ସର୍ବ ବ୍ୟବଧାନ ନାଶି — ପ୍ରେମ ମୁଖ ପରକାଶି
ହୁଅ ଚିର ପ୍ରାଣ-ସ୍ୱାମୀ ଜିଣି କ୍ଷୁଦ୍ର ଅହଙ୍କାର ।

ବିନୀତ ବିଶ୍ୱାସୀ ହୋଇ — ଶ୍ରୀଚରଣ ତଳେ ଥୋଇ
ତୁମ୍ଭର ପବିତ୍ର ନାମେ ଦେବି ପ୍ରାଣ ଉପହାର ।

ପୂର୍ଣ୍ଣକର ଏ ପ୍ରାର୍ଥନା — ନିବାର ପାପ ବେଦନା
ଜାଣୁଛ ହୃଦୟ ଦୁଃଖ ଉଦ୍ଧାର ନାଥ ଉଦ୍ଧାର ।

---

Digitized by srujanika@gmail.com

# ପ୍ରାର୍ଥନା

(ଲଳିତ—ଆଡ଼ାଠେକା)

ତାର ହେ ତାର ହେ ମୋତେ ଅଧମତାରଣ ହର,
ସଂସାର ଆବର୍ତ୍ତ ଜଳେ ପଡ଼ିଛୁ ଜୀବନ ତଥ୍ୟ ।
ହଜ ଗଲିଣି ମୋ ଜ୍ଞାନ କର ଉପାୟ ବିଧାନ
ଉଦ୍ଧାର ଏ ସଙ୍କଟରୁ ଅଧମେ କରୁଣା କର ।

---

(ଆଲେୟା ଜୟ ଜୟନ୍ତ)

(ଝାମ୍ପତାଲ)

ପାଷାଣ୍ଡ ନାସ୍ତିକ ମୁହିଁ ଅଧମ କପଟାଶ୍ରୟୀ
ମୁଖେ ପ୍ରଭୁ ପ୍ରଭୁ ଶବ୍ଦ ଅନ୍ତର ଯେ ଅହଙ୍କାରୀ
କଳ୍ପନା କାମନା ମୋର ପାପ ବିଷେ ଜର ଜର
ଅସକ୍ତ ଜଡ଼ିତ ପ୍ରାଣ ଦେଖ ପ୍ରଭୁ ପାପହାରୀ
ଏ କି ଘୋର ବିଡ଼ମ୍ବନା କରି ଆତ୍ମ ପ୍ରତାରଣା
ଭୁଲୁଛି ମୋହାନ୍ଧ ହୋଇ ମନ୍ଦମତି ଦୁର୍ବିସ୍ତାରୀ
କି କରିବି କାହିଁ ଯିବି କେମନ୍ତେ ହେ ନିସ୍ତରିବି
ରଖ ଏ ନିରକ୍ଷ ଜନେ ଘୋର ସଙ୍କଟୁ ଉଦ୍ଧାରି ।

---

(ସୁରଟି ମଲ୍ଲାର—ଏକତାଲ)

ପାଦ ପଦ୍ମେ ରଖ ମତି ;
ହୃଦୟର ସ୍ୱାମୀ ପ୍ରଭୋ ଅନ୍ତର୍ଯ୍ୟାମୀ
କୃପାକର ଦୀନ ପ୍ରତି ।

ପତିତପାବନ ତୁମ୍ଭେ କୃପାମୟ
ଗତିହୀନ ଜନ ମୁହିଁ ନିରାଶ୍ରୟ
ଦୁଃଖହାରୀ କେହୁ ଆଉ ବନ୍ଧୁ ନାହିଁ
ଜାଣିଅଛି ବିଶ୍ୱପତି ।

Digitized by srujanika@gmail.com

ଚତୁର୍ଦ୍ଦିଗେ ପ୍ରଭୁ ସଂହାର ଶ୍ମଶାନ
ଭସ୍ମରେ ହୃଦୟ ସଦା କମ୍ପମାନ
ଦେଇ ପୁଣ୍ୟବଳ          ପ୍ରେମଶାନ୍ତି ଜଳ
କିଏ ଫେଡ଼ିବ ଦୁର୍ଗତି ।

କିସ ଜଣାଇବି ଦେଖୁଛ ମୋ ଦଶା
ପାଦପଦ୍ମେ ମୋର ସକଳ ଭରସା
ରହୁ ତହିଁ ମୋର          ମନ ମଧୁକର
ନଷ୍ଟେ ଘୁଞ୍ଚିବ ଦୁର୍ଗତି ।

କେବେ ହେବ ପ୍ରଭୁ ହେ ଶୁଭମୁହୂର୍ତ୍ତ
ଦୁଷ୍ଟରିପୁଦଳ ହେବେ ପରାଭୂତ
ହେବ ଏ ପ୍ରାଣର          ରାଜରାଜେଶ୍ୱର
ଘେନିବ ମୋର ପ୍ରଣତି ।

ଚରଣ କମଳୁ ଅମୃତ ପିଇବି
ସରଳ ହୃଦୟେ ତୁମ୍ଭଙ୍କୁ ପୂଜିବି
ସଦା ସର୍ବସ୍ଥାନେ          ତୁମ୍ଭ ନାମ ଗାନେ
ଲଭିବି ପୁଣ୍ୟ ସମ୍ପତ୍ତି ।

---

(ବଙ୍ଗଳାଶ୍ରୀ)

ଦିଅ ଯା ଦେବାର          ସୁଖ କିବା ଦୁଃଖ
ଯାହା ଇଚ୍ଛା ହେ ତୁମ୍ଭର,
ତଥି ମଧ୍ୟେ ଯେହ୍ନେ          କେବଳ ମଙ୍ଗଳ
ଦେଖୁ ଏ ନେତ୍ର ମୋହର ।

ଫଳୁ ଅବା ମରୁ          ଆଶାଲତା ମୋର
ସଂସାର ବନ ମଧ୍ୟର ;

Digitized by srujanika@gmail.com

ପଦ ଛାୟାତଳେ ରଖିଅଛ ମୋତେ
ବୋଲିବି ମୁଁ ନିରନ୍ତର ।

ବିପଦ କ୍ଳେଶର ତୀବ୍ର କଶାଘାତ
ସମ୍ପଦର ସ୍ନେହାଦର
ସବୁରି ମଧ୍ୟରେ ତୁମ୍ଭ ଇଚ୍ଛା ଜୟ
ହେଉ ଆହେ ପ୍ରାଣେଶ୍ୱର !

---

(ଭଟିଆଳି—ଆଡ଼ତାଳି)

ଅନୁକ୍ଷଣ ଦୁର୍ବଳ କାତରେ ଦିଅ ଦରଶନ ।
ଅନ୍ତରେ ବାହାରେ ରିପୁଦଳ
ତରକନ୍ତି କରି କୋଳାହଳ,
ବିଷମ ସଙ୍କଟେ ପଡ଼ି ଡାକଇ ମୁଁ
ଅଧମ ଅନାଥ ଅକିଞ୍ଚନ ।

ଅଭୟ ଘୋଷଣା ଶ୍ରୀମୁଖର
ଶୁଣାଅ ହେ ବାରେ ପ୍ରାଣେଶ୍ୱର,
ଅଜ୍ଞାତରେ ତେବେ ତୁମ୍ଭ ଜୟ ଘୋଷି
ଭେଟିବ ସକଳ ରିପୁଗଣ ।

ଅନ୍ୟଇଚ୍ଛା ନାହିଁ ଶ୍ରୀଚରଣେ
ତୁମ୍ଭ ଇଚ୍ଛାଜୟ ଏ ଜୀବନେ
ଦେଖାଅ ବହନ ବିଘ୍ନବିନାଶନ
ହେ ଭୟ ଭଞ୍ଜନ ନିରଞ୍ଜନ ।

---

Digitized by srujanika@gmail.com

(ଝିଁଝିଁଟ— ଏକତାଳୀ)

ଚିରଶୁଷ୍କ ଥିବ କି ହେ ଅଧମର ଏ ହୃଦୟ ?
ମରୁବକ ସବୁ ମଧ୍ୟେ ଆହେ ପ୍ରଭୁ ଦୟାମୟ ।
ରସରୂପ ତୁମ୍ଭେ ହରି ଢାଳ ରସେ ହୃଦ ଭରି
ପାଷାଣ ହୃଦୟ ପ୍ରଭୁ କର ପ୍ରେମୋଚ୍ଛ୍ୱାସ ମୟ ।
ଆସ ପ୍ରାଣସଖା ମମ ପ୍ରାଣେଶ୍ୱର ନିରୁପମ
ପ୍ରାଣାକାଶେ ବହାଅହେ ପୁଣ୍ୟ ପ୍ରେମର ମଳୟ ।
ହୃଦୟର ଋତୁରାଜ ହୃଦ କାନନେ ବିରାଜ
ସ୍ୱର୍ଗୀୟ ସୌରଭେ ପ୍ରାଣ କର ପ୍ରଭୁ ମଧୁମୟ ।

---

(କାମୋଦ—ଏକତାଳୀ)

ଭରସା ଏକମାତ୍ର ଶ୍ରୀପଦ ହେ ।
ପରମ ପିତା ଶୁଭ ବରଦ ହେ
ଲଭି ଚରଣାଶ୍ରୟ    ଭ୍ରମି ସଙ୍କଟମୟ
ଭବେ ହରାଇ ସର୍ବ ସମ୍ପଦ ହେ,
ଆସିଅଛୁ ଲେଉଟି    ପାପପଙ୍କରୁ ଉଠି
ବିନାଶ ବିଭୁ ସର୍ବ ବିପଦ ହେ ।
ପାପ କୁହୁକେ ପଡ଼ି    ମୋହ ଜାଲରେ ଜଡ଼ି
ଆଦରିଥିଲି ତୁମ୍ଭ ବିଚ୍ଛେଦ ହେ,
ଏବେ ଯନ୍ତ୍ରଣା ଘୋର    ବିନାଶି ଧୈର୍ଯ୍ୟ ମୋର
ଅଥୟ କରୁଅଛୁ ଏ ହୃଦ ହେ ।
ଆସିଛୁ ତେଣୁ ଧାଇଁ    ରଖ ହେ ପ୍ରାଣସାଇଁ
ଅନାଥ ଜନେ ହରି ଶୁଭଦ ହେ,
ଗଲେ ଏ ପ୍ରାଣ ଯାଉ    ଛାଡ଼ିବି ନାହିଁ ଆଉ
ତୁମ୍ଭେ ମୋହର ସର୍ବ ସମ୍ପଦ ହେ ।

---

Digitized by srujanika@gmail.com

(ବେହାଗ—ଯତ୍)

ଭିକ୍ଷା ମାଗଇ ଚରଣେ ;
ଦୀକ୍ଷା ଦିଅ ଜ୍ଞାନଦାତା ମହାପ୍ରଭୁ ଏ ମୂଢ଼ଜନେ
ମୋହ ଘନ ଅନ୍ଧକାରେ ବେଷ୍ଟିତ ମୁହିଁ ସଂସାରେ
ଭୟେ ବିକମ୍ପିତ ପ୍ରାଣ ରିପୁ ଗର୍ଜନେ,
ଏକାକୀ ଯିବି ହେ କାହିଁ ଏ ଘୋରବନେ
ଆସ ଆସ ଆସ ଆସ ମହାପ୍ରଭୁ ରଖ ଏ ଅକିଞ୍ଚନେ ।
କେତେ କେତେ ବର୍ଷ ଧରି ଗମିଲି ଦୁର୍ଭିକ୍ଷା କରି
ନ ଚିହ୍ନିଲି କାହିଁ ଆସିଅଛି ଭୁବନେ,
କାହିଁ ହେ ସ୍ୱଦେଶ ମୋର ନ ସ୍ମରିଲି ମନେ,
ଦେଖାଅ ଦେଖାଅ ପଥ ମହାପ୍ରଭୁ ଦେଇ ଜ୍ୟୋତି ଲୋଚନେ
ଶ୍ରୀଚରଣେ ଗ୍ଲାନିହତ ଦେଖାଇ ସତ୍ୟ ବିରଳେ
ତୁମ୍ଭ ପୁଣ୍ୟ ଶାନ୍ତି ଜଳ ସିଞ୍ଚ ଜୀବନେ,
ସତ୍ୟ ଜ୍ଞାନ ଦୀକ୍ଷା ଏବେ ଦିଅ ଏ ମନେ,
ତାରି ତାରି ଜଗଦୀଶ ମହାପ୍ରଭୁ ମୂଢ଼ ଅନାଥ ଜନେ ।

---

(ପିଲୁ—ପୋସ୍ତ)

ଅସୁ ଦୁଃଖ ଦୈନ୍ୟରାଶି,ତୁମ୍ଭର ନାମ ପ୍ରଭାବରେ
ସହିବ ଆନନ୍ଦେ ତାହା ସେବକ ତବ ସଂସାରେ । ଧ୍ରୁ ।
ଅସୁ ବିପଦ ଲାଞ୍ଛନା, ଗଞ୍ଜନା ମର୍ମଘାତନା,
କୋଟି କ୍ଳେଶ, ଶ୍ଳେଷ, ଶ୍ରାନ୍ତି, କାନ୍ଦଣା ନିଶ ଅନ୍ଧାରେ ।
ତେଜନ୍ତୁ ସବୁ ଆତ୍ମୀୟ, କିଏ ରହ ହେ ପ୍ରିୟ,
ତୋଷ ଦେଇ ପ୍ରେମସୁଧା,ସିଞ୍ଚ କରୁଣା ଆସାରେ ।
ଜଳିବ ଯେତେ ମୋ ହିଆ ତେତିକି ହୋଇବ ଠିଆ
ଦୁର୍ବଳ ଚରଣ ମୋର ତବ ଅପାର କୃପାରେ ।
ତୁମ୍ଭ ନାମ ଧର୍ମ ଲାଗି ହେବି ମୁଁ ସର୍ବସ୍ୱତ୍ୟାଗୀ
ଅନ୍ତିମେ ହୋଇବି ଭାଗି ତୁମ୍ଭର ପ୍ରେମ ଦୟାରେ ।

---

Digitized by srujanika@gmail.com

(ପିଲୁ—ଯତ୍)

ହେ ଅଧମ ଉଦ୍ଧାରକାରୀହେ,
ମୋତେ ରଖ ପାପରୁ ଉଦ୍ଧାର ହେ ।

ଆଉ କାହା ଆଗେ     କହିବି ମୋ ଦୁଃଖ
କେ ଶୁଣିବ ମୋ ଗୁହାରି ହେ ।

କେହି ନାହିଁ ମୋର     ନିଖିଳ ସଂସାରେ
ତୁମ୍ଭ ବିନା ଦୁଃଖହାରୀ ହେ ।

ଯିବୁଛି ବିକଳେ     ସଂସାର ସମୁଦ୍ରେ
ସେ ସମୁଦ୍ର କର ପାରି ହେ ।

---

( କାଫି-ମିଶ୍ର-କାଓ୍ୱାଲି )

ଦୁଃଖେ କାନ୍ଦଇ ଧରଣୀ,
ଦୁଃଖଭାର ହର ତାର ଦୟାମୟି ବିଶ୍ୱଜନନୀ ।

ଦେଖ କୋଟି କୋଟି ଲୋକେ     ଦାରିଦ୍ର୍ୟ ସନ୍ତାପ ଶୋକେ
ରହିଛନ୍ତି ଅବସନ୍ନ ଦିବା ରଜନୀ
ଜୀବନ ବିଷମ ଭାର, ଦିବସ ଗଣି,

ସେ ଦୁଃଖ ଦାରିଦ୍ର୍ୟ ଶୋକ ହର ମା ଗୋ ଦୁଃଖନାଶିନୀ
ଅବିଦ୍ୟାର ଅନ୍ଧକାରେ     ସଂସାର-ମୃଗତୃଷ୍ଣାରେ
ବୁଲୁଛନ୍ତି ଶତ ଶତ ବିଷୟୀ ଧନୀ,
ଅନିତ୍ୟ କ୍ଷଣଭଙ୍ଗୁରେ ଶାଶ୍ୱତ ମଣି,
ନାଶି ସର୍ବ ମୋହ ଭ୍ରାନ୍ତି     ଉଦ୍ଧାର ମା ବିଶ୍ୱପାବନୀ ।

---

Digitized by srujanika@gmail.com

( ଭୈରବୀ—ଏକତାଲ )

ନୀରବ ଭ୍ରାନ୍ତ ପରପାରେ ଯେନ
ସହବ ଶ୍ରାନ୍ତ ଜବାର ।
ଶ୍ରାନ୍ତ-କିରଣେ ଧ୍ୱାନ୍ତ ବିନାଶି
ପରମ କାନ୍ତ ବିସ୍ତାର ।
ଦୂରେ ଯାଉ ମୋର ମଳିନ ବାସ
ଘୁଞ୍ଚୁ ବେଦନା, ବେଦନା, ଛଳନା, ତ୍ରାସ,
ହର ଅବସାଦ ହୃଦ-ବିଷାଦ
ଶୁଭ୍ର ଶୀକର ସଂଚର ।
ଫିଟାଇ ଦିଅ ମୋ ମୋହ ଆବରଣ
ବିନାଶ ହରବ ଅନ୍ୟ ଶରଣ
କର ଧନ୍ୟ ଜୀବନ ନିତ୍ୟ ନବୀନ
ସିଞ୍ଚ ସ୍ୱରଗ ଆସାର ।

---

( ତାଳ—ପଡ଼ )

ରଖ ରଖ ଜଗତଜୀବନ ହେ ।
ଭରସା ମୋହର ତୁମ୍ଭର ପଦୁଚ,
ଆଶ୍ରୟ ତୁମ୍ଭର ନାମ ହେ ।
ମୁହିଁ ଅତି ପାପୀ ନରାଧମ ହେ,
ସହାର ଯେ କରିଚ ବିଭ୍ରମ ହେ,
ତୁମ୍ଭ ଡାକ ପାଇ ଆସିଅଛୁ ମୁହିଁ,
ଯାହା କର ଏବେ ଭଗବାନ ହେ ।
ଅଗତିର ଗତି ତୁମ୍ଭେ ସିନା,
ସଖା କେହି ନାହିଁ ତୁମ୍ଭ ବିନା,
ହୃଦୟ କନ୍ଦର ତୁମ୍ଭଙ୍କୁ ଗୋଚର,
ଦିଅ ଚରଣେ ଏବେ ଶରଣ ହେ ।

---

Digitized by srujanika@gmail.com

( ରାଗିଣୀ ଲଳିତ—ତାଲ ଆଡ଼ାଠେକା )

ସତ୍ୟରେ ସ୍ଥାପିତ କର ଆତ୍ମା ମୋର ନିରନ୍ତର
ଅସତ୍ୟ-ମୃତ୍ୟୁ-ସ୍ୱପ୍ନରୁ ଅଚିରେ ମୋତେ ଉଦ୍ଧର ।

ଆତ୍ମା ମୋର ହେଉ ଶର, ଲକ୍ଷ୍ୟ ହୁଅ ପ୍ରାଣେଶ୍ୱର
ସତ୍ୟ ଉଚ୍ଚାରଣେ ସ୍ପର୍ଶୁ ତବ ପବିତ୍ର ପୟର ।

ପ୍ରଗାଢ଼ ପବିତ୍ରାନନ୍ଦ ଗଭୀର ବିଶ୍ୱାସ ସହ
ଏକପଥେ ଏକ ସଙ୍ଗେ ହେଉ ଆତ୍ମା ଅଗ୍ରସର ।

ସତ୍ୟମୟ ଏ ଜୀବନ ହୋଇ ନାହିଁ ଯେତେଦିନ
ତେତେଦିନ ଯାଏଁ ଲକ୍ଷ୍ୟ ହୋଇ ଥାଅ ସତ୍ୟେଶ୍ୱର ।

ତୁମ୍ଭେ ଲକ୍ଷ୍ୟ ତୁମ୍ଭେ ପଥ ଜାଣୁ ଜୀବନ ମୋହର
ତୁମ୍ଭଛଡ଼ା ଅନ୍ୟପଥ ନାହିଁ ଆଉ ଏ ପ୍ରାଣର ।

---

( ଭୈରବୀ—ଆଠତାଳୀ )

ବ୍ରହ୍ମସମ ପ୍ରାଣସଖା ନାହିଁ ଆଉ,
ତା ପଦ ଚିନ୍ତନେ ମୋର ଦିନ ଯାଉ ।

କୋଟି ଶଶୀ ପ୍ରଭାକର      ଜିଣି ଅସୀମ ସୁନ୍ଦର
ବ୍ରହ୍ମପାଦପଦ୍ମ ଦଣେ ଦାଉ ଦାଉ ।

ସେ ପଦ ମୋ ଧ୍ରୁବତାରା      ବରଷଇ ସୁଧାଧାରା
ମୋ ବିଶ୍ୱାସ-ନେତ୍ର ତହିଁ ଲଖିଥାଉ ।

ପ୍ରେମମୟ ହିତକାରୀ      ପାପତାପ ଭୟହାରୀ
ତା ପ୍ରେମ-ସିନ୍ଧୁରେ ପ୍ରାଣ ଅବଗାହୁ ।

---

Digitized by srujanika@gmail.com

( ଝିଁଝିଟି ଏକତାଲ-ବ୍ରହ୍ମସଙ୍ଗୀତ-ସ୍ୱରଲିପି )

ପାଦପ୍ରାନ୍ତେ ରଖ ସେବକେ,
ଶାନ୍ତସଦନ ସାଧନଧନ ଦେବଦେବ ହେ ।

ସର୍ବଲୋକ-ପରମଶରଣ, ସକଳ-ମୋହ କଲୁଷହରଣ ।
ଦୁଃଖ ତାପବିଘ୍ନ ତରଣ, ଶୋକଶାନ୍ତ ସ୍ନିଗ୍ଧ ଚରଣ
ସତ୍ୟରୂପ ପ୍ରେମରୂପ ହେ, ଦେବମନୁଜ ବନ୍ଦିତପଦ ବିଶ୍ୱଭୂପ ହେ ।

ହୃଦୟାନନ୍ଦ ପୂର୍ଣ୍ଣଇନ୍ଦୁ, ତୁମି ଅପାର ପ୍ରେମସିନ୍ଧୁ,
ଯାଚେ ତୃଷିତ ଅମିୟବିନ୍ଦୁ, କରୁଣାଳୟ ଭକ୍ତବନ୍ଧୁ ।
ପ୍ରେମନେତ୍ରେ ଚାହଁ ସେବକେ, ବିକଶିତଦଲ ଚିତ୍ତକମଲ ହୃଦୟଦେବ ହେ ।

ପୁଣ୍ୟଜ୍ୟୋତି ପୂର୍ଣ୍ଣଗଗନ, ମଧୁର ହେର ସକଳ ଭୁବନ,
ସୁଧାଗନ୍ଧମୁଦିତ ପବନ, ଧ୍ୱନିତଗୀତ ହୃଦୟଭବନ,
ଏସ' ଏସ' ଶୂନ୍ୟ ଜୀବନେ, ମିଟାଓ ଆଶ ସବପିଆସ, ଅମୃତପ୍ଲାବନେ ।

ଦେହ ଜ୍ଞାନ, ପ୍ରେମ ଦେହ, ଶୁଷ୍କଚିତ୍ତେ ବରଷ ସ୍ନେହ,
ଧନ୍ୟ ହୋକ୍ ହୃଦୟ ଦେହ, ପୁଣ୍ୟ ହୋକ ସକଳଗେହ ।

---

( ରାଗିଣୀ—ଝିଁଝିଟ । ତାଲ—ଏକତାଲୀ )

କି ସୁଖର ଆଶେ ସଂସାର ବିଦେଶେ
ରହିବାକୁ ଆଶା ହୋଇବ ?
ପ୍ରଭୁଙ୍କର ସେବାରେ ସେବକ ହୋଇ
ଏ ଦେହେଁ କି ମୋର ଜୀବନ ସିଦ୍ଧ ?
ନିରାଶା ବିଚ୍ଛେଦେ ଶୋକ ବ୍ୟାକୁଳେ
ବିଭୁ ଇଚ୍ଛା ଜୟ ଗାଇବ ।
ଧନ ଜନ ମାନ କଣ୍ଟକେ ପୂର୍ଣ୍ଣ
ପ୍ରତିକ୍ଷଣେ କ୍ଷତ କରେ ଜୀବନ,
ବ୍ୟଥା ପାଇ ପ୍ରାଣ ସୁଖ ଆଶାରେ
ଇଚ୍ଛା କରେ ସବ ତ୍ୟଜିବ ।

Digitized by srujanika@gmail.com

ଅପାର ସଂସାରେ ଜର୍ଜ୍ଜର ହୋଇ
କାନ୍ଦିଲେ କି କେବେ ସୁଖ ମିଳିବ,
କାହିଁ ସୁଖ ଶାନ୍ତି ଏ ଜୀବନରେ
କାନ୍ଦି କାନ୍ଦି ପ୍ରାଣ ଶୁଖିବ ।
ପ୍ରକୃତ ଜୀବନ ପ୍ରକୃତ ଶାନ୍ତି
ଇଚ୍ଛ ଯେବେ କେହି ତବେ ଲଭିବ,
କାନ୍ଦି କାନ୍ଦି ତେବେ ପ୍ରଭୁ ସେବାରେ
ଉତ୍ସର୍ଗ କର ତୁ ଏ ଜୀବ ।

---

ଗାଅରେ ପ୍ରଭୁଙ୍କ ନାମ ପୁଣ୍ୟ ସଙ୍ଗୀତ ।
ଯେ ନାମ ଘେନିଲେ ତୁଣ୍ଡେ ଖଣ୍ଡେ ଦୁରିତ ।
ନାମ ସଂକୀର୍ତ୍ତନ ବାରେ କର ସର୍ବେ ରସନାରେ
ପିଅରେ ଭକତ ଭରେ ନାମ ଅମୃତ ।
ହେ ପବିତ୍ର ନାମ ହୃଦେ ଧରରେ ଧରରେ ମୁଖେ,
ପଳାଇବ ପାପତାପ ଶୋକ ତୁରିତ ।
ହେ ପାପହରଣ ନାମ ଧରିଲେ ପାପୀର ପ୍ରାଣ
ପୁଣ୍ୟ ଶାନ୍ତି ପ୍ରେମାନନ୍ଦେ ହେବ ପୂରିତ ।

---

(ହାମ୍ବାନା—ଝାଁପତାଳ)
ଘନ ଗମ୍ଭୀର ଏହି ଘନୋଦୟ ସ୍ୱାସେ ।
ଗାଅରେ ସଘନେ ଆଜ ସେ ମହାମହେଶେ ।
ଏହି ପଞ୍ଚବିଂଶ ଅବ୍ଦ ଯେଉଁ ବ୍ରହ୍ମ ନାମ ଶବ୍ଦ
ଘୋଷି ଅଛ କ୍ଷୀଣ ସ୍ୱରେ ଏ ଉତ୍କଳ ଦେଶେ ;
ସେ ନାମର ଜୟରବେ ମାତ ହେ ଆଜ ସରବେ
ଅବନତ ଅପମାନିତ ହେବ ହେ ଜନମେଶେ ।
ଲଭିବ ନବୀନ ପ୍ରାଣ ଘୋଷିଲେ ସେ ବ୍ରହ୍ମନାମ
ବହିଲେ ଏ ଜୀବନ ପ୍ରଭୁଙ୍କ ଉଦ୍ଦେଶେ ।

---

Digitized by srujanika@gmail.com

(ରାଗିଣୀ—କାଫି)

ତାଲ ଯତ୍ପଟ

ଭଜ ଶ୍ରୀହରି; ଯେବେ ଯିବୁ ଭବସିନ୍ଧୁ ଉତ୍ତରି ।
ବୃଥା ଅସତ୍ୟ ଆଚାରେ ପଡ଼ି ନରଘୋରେ,
ସଦାରେ ସୁଖଆଶା ଧରି ।
ମରୀଚିକା ଭ୍ରମ, କରୁଛ ବିଭ୍ରମ,
କୁକର୍ମ ଅକର୍ମକୁ ଆଦରି ;
ମାୟା ଜାଲେ ପଡ଼ି ଘୁଡ଼ି ମହାରଡ଼ି,
ଘଡ଼ିକେ ପ୍ରଲୟ ପାହୋରି ।
ଧନ ମାନ ଜନ ସବୁ ଅକାରଣ,
କାରଣ ନୋହିବ ତୋହରି ;
ହେତୁ ଅନାଦି କାରଣ, ଜଗତ ତାରଣ,
ନିତ୍ୟ ପୂଜ ଯିବୁ ନିସ୍ତରି ।

---

(ମୂଲତାନ—ଏକତାଲ)

ଜୟ ଅମୃତମୟ ଜୟ ବିଶ୍ୱ ଆଶ୍ରୟ
ଜୟ ଜୟ ଦୀନହୀନ ତାରଣ,
ଜୟ ପରମେଶ୍ୱର ଜୟ ଶିବ ସୁନ୍ଦର
ଜୟ ଜୟ ମଙ୍ଗଳର କାରଣ ।
ଭୂମ୍ନର ପମ୍ବର ବନ୍ଦେ ଚରାଚର
କୋଟି ସୂର୍ଯ୍ୟ ଚନ୍ଦ୍ର ଭୁବନ,
ମହାପୁଲକରେ ନମନ୍ତି ପଦ୍ମରେ
କୋଟି କୋଟି ଭକ୍ତଜୀବନ ।
ଜାଗ୍ରତ ବିଧାତା ବିଶ୍ୱ ପିତାମାତା
ପ୍ରାଣ ସ୍ୱାମୀ ଭବକାରଣ,
ମାଗଇ ଅଭୟ ପ୍ରଭୁ ଦୟାମୟ
କ୍ଲେଶ କଳୁଷ ନାଶନ ।

---

Digitized by srujanika@gmail.com

( ବୃଂହ ଘାରଙ୍ଗ—ଚୌତାଲ )

ବନ୍ଦଇ ଶ୍ରୀପଦ ବିଶ୍ୱ ଭୁବନ
ଜୟ ଦୟାମୟ ବିଶ୍ୱ ଶରଣ,
ରବି ଚନ୍ଦ୍ରତାରା ପୂର୍ଣ୍ଣ ଗଗନ
ମଗନ ମହିମା ନୀରେ ।

ମହିମାର କେତୁ ହିମାଦ୍ରି ରାଜ
ବିଜୟ ଦୁନ୍ଦୁଭି ମେଘ ସମାନ
ଘଣ୍ଟରୁମ୍ବୁର ହେ ଜଳଧି ନାଦ
ତୁମ୍ଭର ଏ ଧରଣୀରେ ।

ପଦ୍ମ ପୁଷ୍ପ ଫଳେ ତରୁନିକରେ
ପୂଜନ୍ତି ହେ ପଦ ଆନନ୍ଦଭରେ,
କୋଟି କୋଟିଜୀବ ନମି ପଦ୍ମରେ
ସେବନ୍ତି ପ୍ରେମ ସମୀରେ ।

କୋଟି କୋଟି ଭକ୍ତ ହୃଦୟ ଧାମେ
ଉଚ୍ଛୁଳଇ ପ୍ରେମ ତୁମ୍ଭର ନାମେ
ବିଶ୍ୱତନ୍ତ୍ରୀ ନାମ ପ୍ରବନ୍ଧ ଗାନେ
ନିତ ଦିବା ରଜନୀରେ ।

---

(ଆଶା-ଠୁମ୍ରି)

ସବନ୍ଧ ଆନନ୍ଦେ ଆଜି ପାପୀ ବନ୍ଦେ
ହେ ପ୍ରଭୁ ତବ ପାଦତଳେ ;

ପାପେ ତାପେ ଶୋକେ ତବ ପ୍ରେମାଲୋକେ
ଝରେଛି ହୃଦୟ କମଳେ ।

Digitized by srujanika@gmail.com

ରୌଦ୍ରରେ ସଂସାରେ          ଦେଖି ଅନ୍ଧକାରେ
ଯାସେ ମୁଁ କାନ୍ଦିଲି ଡାକିଲେ ;
ତେଣୁ କି ଗୁପ୍ତର          ଜ୍ୟୋତି ମଙ୍ଗଳର
ଆଜି ହେ ଏ ପ୍ରାଣ ଉଜଳେ ।

ଦୁଃଖ ତାପେ ପାପୀ          ଏତେ କାଳ ଯାପି
ଆଶ୍ରୟ ଚରଣ କମଳେ
ଲଭିଲ କି ନାଥ,          କାତରେ ଅନାଥ
ପୂଜଇ ଭାସି ଅଶ୍ରୁ ଜଳେ ।

ଶ୍ରୀମୁଖର ଭାଷା          ଶୁଣି କେତେ ଆଶା
ଉପୁଜେ ଦୁଃଖୀ ମର୍ମସ୍ଥଳେ,
ମୃତ ଜନେ ପ୍ରାଣ          କରିବ ହେ ଦାନ
ଅଦ୍ଭୁତ କରୁଣା କୌଶଳେ ।

---

(ମିଶ୍ର-ଖାମ୍ବାଜ-ଏକତାଲ)

ପାପ ଗରଲ ଖଣ୍ଡନ ପ୍ରଭୁ          ପାପ ଗରଲ ଖଣ୍ଡନ ହେ ।
ତାପିତ ହୃଦୟ ଚନ୍ଦନ ପ୍ରଭୁ          ତାପିତ ହୃଦୟ ଚନ୍ଦନ ହେ ।
ଭାବନା-ଭୟ ବାରଣ ପ୍ରଭୁ          ଭାବନା-ଭୟ ବାରଣ ହେ ।
ଦୁଃଖୀ-ଅଧମ ତାରଣ ପ୍ରଭୁ          ଦୁଃଖୀ-ଅଧମ ତାରଣ ହେ ।
ସବ ବିପଦ ଭଞ୍ଜନ ପ୍ରଭୁ          ସବ ବିପଦ ଭଞ୍ଜନ ହେ ।
ଅନ୍ଧ ନୟନ ଅଞ୍ଜନ ପ୍ରଭୁ          ଅନ୍ଧ ନୟନ ଅଞ୍ଜନ ହେ ।
ମୋହ-ତମିର ନାଶନ ପ୍ରଭୁ          ମୋହ-ତମିର ନାଶନ ହେ ।
ସତ୍ୟ ଜ୍ୟୋତି ପ୍ରକାଶନ ପ୍ରଭୁ          ସତ୍ୟ ଜ୍ୟୋତି ପ୍ରକାଶନ ହେ ।
ପ୍ରେମମୟ ନିରଞ୍ଜନ ପ୍ରଭୁ          ଭକ୍ତ ହୃଦୟ ରଞ୍ଜନ ହେ ।
ମାଗଇ ପଦ ବ୍ୟାକୁଳେ ପ୍ରଭୁ          ଏ ଅଧମ ଅକିଞ୍ଚନ ହେ ।
ସେ ପଦ ସବ ସମ୍ପଦ ପ୍ରଭୁ          ଦୁଃଖୀର ମଣି କାଞ୍ଚନ ହେ ।

---

Digitized by srujanika@gmail.com

(ବିହାଗ-ଝାମ୍ପତାଳ)

ଧନ୍ୟ ଧନ୍ୟ ମହାପ୍ରଭୁ ଧନ୍ୟ ମହିମା ତୁମ୍ଭର
ଯେ ମହିମା ପଦତଳେ ପ୍ରଣତ ଏ ଚରାଚର ।

କେତେ ରବି ଚନ୍ଦ୍ରତାରା ତାଙ୍କ ଶୁଭ୍ର ଜ୍ୟୋତିଧାରା
କରନ୍ତି ଆରତି ପଦେ ବେଢ଼ି ତବ ଶ୍ରୀମନ୍ଦିର ।

ମହିମା ସଙ୍ଗୀତ ତବ ନିରନ୍ତର ନବ ନବ
ଗାଉଛନ୍ତି କୋଟି ଭୁବନ ପରବ୍ରହ୍ମ ପରାତ୍ପର ।

ଋଷି ଭକ୍ତ ଦେବଦଳ ନେତ୍ରେ ପ୍ରେମ-ଅଶ୍ରୁଜଳ
ଲୁଣ୍ଠି ରହିଛନ୍ତି ପଦେ କିବା ଛବି ମନୋହର ।

ସେ ମହା ମହିମା ଧ୍ୟାନେ ଗାଏ ବିଶ୍ୱ ଏକତାନେ
ଜୟ ଜୟ ଜଗଦୀଶ ଏ ଘୋଷଣା ନିରନ୍ତର ।

---

(ରାଗିଣୀ-ଖମ୍ବାଜ ତାଲ-ଏକତାଳୀ)

ଧନ୍ୟ ଧନ୍ୟ ପୂର୍ଣ୍ଣ ବ୍ରହ୍ମ, ବିଶ୍ୱ ଭୁବନ କାରଣ,
ସତ୍ୟ ଚିଦାନନ୍ଦ ଦେବ, ଦୁଃଖ ବିପଦ ବାରଣ ।

ତୁମ୍ଭେ ଶିବମଦ୍ୱୈତ, ତୁମ୍ଭେ ଅନାଦି ଅନନ୍ତ
ତୁମ୍ଭେ ଜ୍ୟୋତିର୍ମୟ ଜୀବନ୍ତ, ନିତ୍ୟ ହେ ପୁରାତନ ।

ତୁମ୍ଭେ ନାଥ ନିର୍ବିକାର, ନିରାକାର ନିରାଧାର,
ଅପାର କରୁଣାଗାର, ମଧୁର ମୂର୍ତ୍ତିମାନ ।

ଭକ୍ତ ବାଞ୍ଛା କଳ୍ପତରୁ, ତୁମ୍ଭେ ଦେବ ଜଗଦ୍‌ଗୁରୁ
ନିର୍ମଳ ପବିତ୍ର ରୂପ, ପାପ ତାପ ନାଶନ ।

---

Digitized by srujanika@gmail.com

(ବନ୍ଦନା ବେଲାଂଲ-ଝିଂତାଳ)

ଜୟ ଜଗଦୀଶ୍ୱର ଜୟ ପରମେଶ୍ୱର
ଜୟ ଜୟ ମଙ୍ଗଳ ଦାତା,
ଜୟ କରୁଣାମୟ ଜୟ ବିଶ୍ୱ ଆଶ୍ରୟ
ଜୟ ଜୟ ବିଶ୍ୱବିଧାତା ।
ଜଗତ ଉଦ୍ଧାରକ କୋଟି ବିଶ୍ୱ ପାଳକ
ସର୍ବହିତକାରକ ଦାତା,
ସର୍ବଦୁଃଖ ବାରଣ ସର୍ବଶୁଭ କାରଣ
ଦୀନଜନ ତାରଣ ତ୍ରାତା ।
ପୁଣ୍ୟ ଶାନ୍ତିଦାୟକ ସର୍ବସୃଷ୍ଟି ନାୟକ
ତ୍ରିଭୁବନ ବ୍ୟାପକ ଜ୍ଞାତା,
ବିଶ୍ୱ ପିତା ତାରକ ପାପ ତାପ ହାରକ
ଜୟ ଜୟ ଜଗତ ମାତା ।

---

ସ୍ତୋତ୍ର । ଅନୁଷ୍ଟୁପ ଛନ୍ଦ ।

ନମ ପରାତ୍ପର ବ୍ରହ୍ମ ନମସ୍ତେ ପରମେଶ୍ୱର
ନମଃ ପରାତ୍ପର ବ୍ରହ୍ମ ନମସ୍ତେ ବିଶ୍ୱକାରଣ ।
ନମୋ ଗୁରୋ ପିତାମାତା ନମଃ ପ୍ରାଣପତେ ପ୍ରଭୋ
ନମସ୍ତେ କରୁଣାସିନ୍ଧୋ ସଚ୍ଚିଦାନନ୍ଦ ସୁନ୍ଦର ।
ଜଗନ୍ନାଥ ଜଗଦ୍ଭ୍ରାତଃ ଦୀନବନ୍ଧୋ ଦୟାମୟ
ନମସ୍ତେ ଜଗଦାଧାର ନମସ୍ତେ ଜଗଦୀଶ୍ୱର ।
ଭବାବ୍ଧିକର୍ଣ୍ଣଧାରେଣ ନମୋ ନିତ୍ୟ ନିରଞ୍ଜନ
ଅନନ୍ତ ସର୍ବଲୋକେଶ ପରମାତ୍ମନ ନମୋନମଃ ।

ସ୍ତୋତ୍ର ଭୁଜଙ୍ଗପ୍ରୟାତଃ ଛନ୍ଦ

ନମୋ ଦେବ ଦେବ ନମୋ ଦୀନବନ୍ଧୋ
ନମୋ ନିର୍ବିକାର ନମଃ ପ୍ରେମସିନ୍ଧୋ
ନମସ୍ତେ ବରେଣ୍ୟ ନମସ୍ତେ ଶରଣ୍ୟ
ନମୋଽନନ୍ତ ଦେବ ନମୋ ଧନ୍ୟ ଧନ୍ୟ ।

Digitized by srujanika@gmail.com

ନମସ୍ତେ ମହେଶ ନମୋ ମୁକ୍ତିଦାତଃ
ନମୋ ନିଷ୍କଳଙ୍କ ନମଃ ପାପହାତଃ
ନମସ୍ତେ ସ୍ୱୟମ୍ଭୋ ନମଃ ସ୍ୱପ୍ରକାଶ
ନମୋ ଦୀନନାଥ ନମଃ ଶ୍ରୀନିବାସ ।

---

## ସଙ୍କୀର୍ତ୍ତନ

ଘୋଷ ହେ ଜଗତ ଜନେ ମହାନନ୍ଦ ମନେ,
ସୁଧାମୟ ବ୍ରହ୍ମନାମ ପ୍ରାଣରାମ
ମୁକ୍ତିଧାମ ଏ ଭୁବନେ ।
ସେହି ମହାନାମେ ଭକ୍ତି ମହାଶକ୍ତି
ପାପ ତାପ ବିନାଶନେ ।
ଲୌହ ପ୍ରାଣ ଦ୍ରବ ହିବ ଆରେ ଜୀବ
ହେହିନାମ ସଙ୍କୀର୍ତ୍ତନେ ।
ସେହି ନାମାମୃତ ବାରି ନରନାରୀ
ପାନକର ଅନୁକ୍ଷଣେ ;
କର ପ୍ରାଣ ମନ ସମର୍ପଣ
ପ୍ରଭୁଙ୍କର ଶ୍ରୀଚରଣେ ।

---

## ବ୍ରହ୍ମ ସଙ୍ଗୀତ । ( କୀର୍ତ୍ତନ )

ପ୍ରଭୁ ହେ ମୁହିଁ ଅଧମ ଜନ,
ବ୍ୟାକୁଳେ ତୁମ୍ଭର ମାଗେଁ ଚରଣ ।
ଦେଖ ପ୍ରଭୁ ମୋର କିବା ଦୁର୍ଗତି,
ନାଶଗଲି ବାରେ ଲଗାଅ କିତି ।
ସଂସାରର ପାପେ ଗଲି ମୋ ଧନ,
କପଟ ତଣବ କିହ ବନ୍ଧନ ।
ଜାଣିଲିଣି ମୁହିଁ ତୁମ୍ଭ ବିହୁନେ,
ଆନ କେ ଦୋଷର ନାହିଁ ଭୁବନେ ।

Digitized by srujanika@gmail.com

ମୋପରି କେତେକ ପାପିସନ୍ତାନ,
ତରିଛନ୍ତି ଧରି ତବ ଚରଣ ।
ଛଡ଼ାଅ ମୋହର ପାପ-ବାସନା,
କାତରେ ଡାକୁଅଛୁ କର ବା ମାର,
ଯାହାଇଚ୍ଛା ପଛେ ସେଇତା କର ।

---

ବ୍ରହ୍ମସଙ୍ଗୀତ । କୀର୍ତ୍ତନ ।

ଗାଅ ଆନନ୍ଦେ ସବେ ଗାଅ ।
ଏକମାତ୍ର ପରମାତ୍ମା ବ୍ରହ୍ମାଣ୍ଡ ବିଧାତା,
ଏକମାତ୍ର ପ୍ରଭୁ ଗୁରୁ ବନ୍ଧୁ ପିତାମାତା
ଏକମାତ୍ର ପରିତ୍ରାତା ପବିତ୍ର ମହାନ,
ଏକମାତ୍ର ସର୍ବସାକ୍ଷୀ ମଙ୍ଗଲନିଦାନ ।
ଏକମାତ୍ର ହୃଦକାନ୍ତ ଅଗତିର ଗତି,
ଏକମାତ୍ର ପ୍ରାଣସ୍ୱାମୀ ସର୍ବଲୋକପତି ।
ଏକମାତ୍ର ଆଦିଶକ୍ତି ଅଖିଳକାରଣ,
ଏକମାତ୍ର ଶାନ୍ତିଦାତା ପତିତପାବନ ।
ଏକମାତ୍ର ଅଦ୍ୱିତୀୟ ଅନନ୍ତ ଅପାର,
ଏକମାତ୍ର ସର୍ବବ୍ୟାପୀ ବ୍ରହ୍ମ ନିରାକାର ।
ଏକମାତ୍ର ସନାତନ ସ୍ୱୟମ୍ଭୁ ଈଶ୍ୱର,
ଏକମାତ୍ର ସତ୍ୟଜ୍ୟୋତି ଅମୃତସାଗର
ଏକମାତ୍ର ଅନ୍ତର୍ଯ୍ୟାମୀ ଅଧମତାରଣ,
ଏକମାତ୍ର କୃପାସିନ୍ଧୁ କାତରଶରଣ ।
ଏକମାତ୍ର ଭୟହାରୀ ଭବକର୍ଣ୍ଣଧର,
ଏକମାତ୍ର ଜଗନ୍ନାଥ ଜୀବନ ଆଧାର ।
ଏକମାତ୍ର ଧର୍ମରାଜ ସର୍ବଶକ୍ତିମୟ,
ଏକମାତ୍ର ସୁଧାସିନ୍ଧୁ ଆନନ୍ଦ-ଆଳୟ ।
ଏକମାତ୍ର ଜ୍ଞାନମୟ ଜାଗ୍ରତବିଧାତା,
ଏକମାତ୍ର ନ୍ୟାୟକାରୀ ନ୍ୟାୟଦଣ୍ଡଦାତା ।

---

ଏକମାତ୍ର ନିଷ୍କଳଙ୍କ  ପାଷଣ୍ଡଦଳନ,
ଏକମାତ୍ର ମୋକ୍ଷହେତୁ  ନିତ୍ୟ ନିରଞ୍ଜନ ।

ଏକମାତ୍ର ମୃତ୍ୟୁଞ୍ଜୟ  ପ୍ରତ୍ୟକ୍ଷଦେବତା,
ଏକମାତ୍ର ଭଗବାନ  ଭୁବନକରତା ।

ଏକମାତ୍ର ପ୍ରାଣେଶ୍ୱର  ପରମସୁନ୍ଦର,
ଏକମାତ୍ର ଭକ୍ତସଖା  ଭକ୍ତମନୋହର ।

ଏକମାତ୍ର କୃପାସିନ୍ଧୁ  କଲୁଷଭଞ୍ଜନ,
ଏକମାତ୍ର ସିଦ୍ଧିଦାତା  ସଙ୍କଟବାରଣ ।

ଏକମାତ୍ର ପୁଣ୍ୟ-ମୂର୍ତ୍ତି  ବନ୍ଧୁ ଜଗଦ୍ଗୁରୁ,
ଏକମାତ୍ର ଭକତର  ବାଞ୍ଛାକଳ୍ପତରୁ ।

ଏକମାତ୍ର ପ୍ରେମଚନ୍ଦ୍ର  ହୃଦୟ ଆକାଶେ,
ଏକମାତ୍ର ପ୍ରାଣସଖା  ସଦା ଦୁଃଖୀ ପାଶେ ।

ଏକମାତ୍ର ବିଶ୍ୱବନ୍ଦ୍ୟ  ବିପଦ୍ବିନାଶନ,
ଏକମାତ୍ର ଅନ୍ନ ଧନ  ସମ୍ପଦକାରଣ ।

ଏକମାତ୍ର ଆଦିକବି  ଆନ୍ଦଚନ୍ଦ୍ରକର,
ଏକମାତ୍ର ପ୍ରକାଶକ  ନିଜ ସ୍ୱରୂପର ।

ଏକମାତ୍ର ଘୋର  ମୋହ-ଗ୍ରନ୍ଥି ବିନାଶନ,
ଏକମାତ୍ର ଭକ୍ତହୃଦ—ପଦ୍ମର ତପନ ।

ଏକମାତ୍ର ନିର୍ବିକାର  ନିଖିଳ-ଆଶ୍ରୟ,
ଏକମାତ୍ର ବୁଦ୍ଧିଦାତା  ଦୁର୍ବଳର ବଳ,
ଏକମାତ୍ର ଗତି ଆଶା  ଭରସା କେବଳ ।

---

Digitized by srujanika@gmail.com

ଏକମାତ୍ର ସଦାନନ୍ଦ    ପୂର୍ଣ୍ଣ ପରମେଶ,
ଏକମାତ୍ର ପ୍ରଜାପତି    ଅନାଦି ଅଶେଷ ।

ଏକମାତ୍ର ଅତୀନ୍ଦ୍ରିୟ    ବାଙ୍ମନ-ଅତୀତ,
ଏକମାତ୍ର ମହାରାଜ    ବ୍ରହ୍ମାଣ୍ଡସେବିତ ।

ଏକମାତ୍ର ଶାନ୍ତିଦାତା    ପାଷାଣ୍ଡଦଳନ,
ଏକମାତ୍ର ରୋଗହାରୀ    ସନ୍ତାପହରଣ ।

ଏକମାତ୍ର ବିଶ୍ୱଲକ୍ଷ୍ମୀ    ବ୍ରହ୍ମାଣ୍ଡଜନନୀ,
ଏକମାତ୍ର ଭକ୍ତପ୍ରାଣ    ହୃଦସ୍ୱର୍ଣ୍ଣମଣି ।

ଏକମାତ୍ର ମହାଶକ୍ତି    ମହାଭୟଙ୍କରୀ,
ଏକମାତ୍ର ଜଗଦମ୍ବା    ରାଜରାଜେଶ୍ୱରୀ ।

ଏକମାତ୍ର ରିପୁକୁଳ—ସଂହାରକାରିଣୀ,
ଏକମାତ୍ର ପୁଣ୍ୟପ୍ରେମ—ସତ୍ୟପ୍ରସବିନୀ ।

ଏକମାତ୍ର ନିତ୍ୟ ନବ    ନିତ୍ୟ ପୁରାତନ,
ଏକମାତ୍ର ଇଷ୍ଟଦେବ    ଭୁବନମୋହନ ।

ଏକମାତ୍ର ସର୍ବାଶ୍ରୟ    ଇହ ପରଲୋକେ,
ଏକମାତ୍ର ପ୍ରାଣାରାମ    ଦୁଃଖେ ତାପେ ଶୋକେ ।

ଏକମାତ୍ର କୃପାସିନ୍ଧୁ    ଲୀଳାମୟ ହରି,
ଏକମାତ୍ର ଯାର ନାମେ ପାପୀ ଯାଏ ତରି ।

---

Digitized by srujanika@gmail.com

(ଖମ୍ବାଜ-ଏକତାଲ)

ଉଠ ହେ ଉଠ ହେ
ବୀର ବେଶେ ବ୍ରହ୍ମସେନା
ବନ୍ଧୁ-ରଣ-ଭେରୀ ଶୁଣି କର୍ଣ୍ଣରେ ।
ରାଜ ସେନା ମଧ୍ୟେ ନାମ ଲେଖି
ତାଙ୍କ ଆଜ୍ଞାକୁ ସଦା ଉପେକ୍ଷି,
ନିଦ୍ରା ଯାଅ ଏବେ କିପାଇଁ ରଣ କ୍ଷେତ୍ରରେ ।
ଧର୍ମଯୁଦ୍ଧେ ପ୍ରାଣ ଗଲେ ଭାଇ,
ଲଜ୍ଜା କେବେତ ସେଥିରେ ନାହିଁ,
ମରିବତ ଯେବେ ମର ଧରମ ଯୁଦ୍ଧରେ ।

ଧର ସତ୍ୟ ଧ୍ୱଜା ସର୍ବେ କରେ
ଗାଅ ସତ୍ୟ ଜୟ ସଗର୍ବରେ,
ସେନାପତି ବ୍ରହ୍ମ ଦେଖ ଅଛନ୍ତି ପାର୍ଶ୍ୱରେ ।
ବଳ ପ୍ରତି ଅପେକ୍ଷା କରିଲେ
ତାହା ନ ପାଇବ କେବେ ଛଳେ,
ଯୁଦ୍ଧ କଲେ ବଳ ନିଶ୍ଚେ ଆସିବ ଦେହରେ ।

ରାଜା ଆଜ୍ଞାପ୍ରତି ଲକ୍ଷ୍ୟ କରି
ଆଉ କାହାକୁ ପ୍ରାଣେ ନ ଡରି,
ପ୍ରାର୍ଥନାସ୍ତ୍ର ଦେଇ ପଶ ସମର ମଧ୍ୟରେ ।

---

(ଠୁମ୍‌ରି)

ଏଗୃହ ଆକାଶେ ନବୀନ ଜ୍ୟୋତି
ପ୍ରକାଶିଲ ପ୍ରଭୁ କରୁଣାଭରେ ।
ଅମୃତ ଧାମର ନବୀନ ଯାତ୍ରୀ
ପ୍ରେରିଅଛ ନାଥ ପ୍ରେମ ଆଦରେ ।
ସଂହାରିବା ପାଇଁ ଦୁରିତରାଶି
ପ୍ରେରିଲକି ନବ ବୀର ସମରେ ।
ତୁମ୍ଭର ଦୟାରେ ନବ ନିଦର୍ଶନ
ଦେଖାଇଲ ଏହି ଗୃହ ମଧ୍ୟରେ ।

Digitized by srujanika@gmail.com

ଧନ୍ୟ ବିଶ୍ୱମାତଃ ତବ କରୁଣା
ଆନନ୍ଦେ ଆନନ୍ଦ ବିଧାନ କରେ ।

---

( ଲଳିତା ଆଡ଼ାଠେକା )

ଏ ସଂସାର ରଙ୍ଗଭୂମି, ତୁମ୍ଭେ ତାର ସୂତ୍ରଧାର,
ନିତ୍ୟ ନବ ନବ ଆତ୍ମା ଦେଖାଉଛ ଅନିବାର
ଅଦୃଶ୍ୟ ନେପଥ୍ୟଦେଶ    ତେଜି କି ପୁଣ୍ୟ-ସନ୍ଦେଶ
ଆଣୁଛନ୍ତି ଭବେ ତବ ନବ ନବ ପରିକର ।
ଆଜି ଏ ଗୃହେ କି ରଙ୍ଗେ    ନବ ମାତାର ଉତ୍ସଙ୍ଗେ
ନବାନନ୍ଦପ୍ରଦ ନବ-ଶିଶୁ ଶୋଭେ ମନୋହର ।
ଅଙ୍କ ଗର୍ବିଙ୍କ ଜନମେ    ତୁମ୍ଭର ଚରଣାଶ୍ରମେ
ତୁମ୍ଭର ମଙ୍ଗଳ-ଲୀଳା ଦେଖାଅ ହେ ଅନିବାର ।
ତୁମ୍ଭର ପୁଣ୍ୟ ଆନନ୍ଦେ    ନୂତନ ଗାୟତ୍ରୀ ଛନ୍ଦେ
ଏହାର ଜୀବନ-ବେଦ ରଚ ବ୍ରହ୍ମ ପରାତ୍ପର ।

---

( ଖଟିଆସ୍ତ—ଆଡ଼ତାଳ )

ଶୁଭକ୍ଷଣେ
ଏ ଯୁଗଳ ହୃଦ ରଖ ଶ୍ରୀଚରଣେ ।
ତୁମ୍ଭର ପ୍ରେମର ଜଗତରେ
ପ୍ରେମେ ଲେଡ଼ି ଦୁହେଁ ପରସ୍ପରେ,
ଆସିଛନ୍ତି ଆଜି    ଆଶୀର୍ବାଦ ଆଶେ
ପବିତ୍ର କର ହେ ଏ ମିଳନେ ।
ବେନି ହୃଦ ବେନି ହସ୍ତ ଧରି
ବିଶ୍ୱ ପୁରୋହିତ ଆହେ ହରି,
ଯୁଗଳ ହୃଦୟ    କରିଦିଅ ଏକ
ତୁମ୍ଭ ପ୍ରେମ ମନ୍ତ୍ର ଉଚ୍ଚାରଣେ ।
ବିଘ୍ନବାଧା ସବୁ କରି ଦୂର
କର ଏ ମିଳନ ସୁମଧୁର,
ପ୍ରେମବ୍ରତେ କରି    ଦୁହିଙ୍କି ଦୀକ୍ଷିତ
ଦେନିଯାଅ ପ୍ରେମ ନିକେତନେ ।

---

Digitized by srujanika@gmail.com

( ରାଗିଣୀ—କଲ୍ୟାଣ )

ତାଳ—ଯତ୍ର

ଅବୋଧ ମନ, ତୁ କି ଜାଣୁ ନାହିଁ ରେ ।
ଜାଣୁ ନାହିଁ ତୁକି ଜାଣୁ ନାହିଁରେ ।

ଯେ ଦେହେ କରୁ ଯତନ, ଦିନେ ନେବଟି ଶମନ,
ନ ଯିବ ଏ ଧନ ଜନ ସଙ୍ଗେ କେହି ରେ ।

ଏକ ଏକ ଜନ କରି ଗଲେ ତୋ ସଙ୍ଗ ବାହାରି,
ଦିନେ ସମସ୍ତଙ୍କୁ ଛାଡ଼ି ଯିବୁ ତୁହିରେ ।

ଅତଏବ ଆରେ ମନ, ଥାଉଁ ଥାଉଁ ଏ ଜୀବନ,
କର ଶ୍ରୀହରି ଭଜନ (ତୋର) ସଙ୍ଗୀ ସେହି ରେ ।

---

( ରାଗିଣୀ—ସିନ୍ଧୁ ତାଳ—ପଡ଼ି )

ଆରେ ଭୋଳା ମନ,
ପଡ଼ି ମାୟା ଜାଲେ ହେଲୁ ଅଚେତନ ।
ପଞ୍ଚଠାରୁ ପଞ୍ଚଭୂତ ଠୁଳ କରି, ଯତନେ ଗଢ଼ିଛୁ ଏ ପଞ୍ଜୁରି,
ପଞ୍ଚଜ୍ଞାନ ଦ୍ୱାର ପଞ୍ଚକର୍ମଦ୍ୱାର, ଦଶ ପବନରେ ସଚେତନ ।

ପଞ୍ଚେ ପଞ୍ଚ ଯେବେ ମିଶିଯିବ, ଆତ୍ମା ବିହଙ୍ଗମ ନ ଫେରିବ,
ପରମ ଆକାଶେ ପରଂବ୍ରହ୍ମ ଆଶେ କରୁଥିବ ସଦା ବିଚରଣ ।

କହେ ଦୀନ ଦାସ ଏ ବିନୟ ଘେନ, ଅନ୍ତ ଭାବି ହୁଅ ସାବଧାନ,
ଏ ପଞ୍ଜରି ଦେହେ ଜୀବ ଥିବାଯାଏଁ ବ୍ରହ୍ମ ପାଦପଦ୍ମେ ରଖ ମନ ।

---

Digitized by srujanika@gmail.com

( ଝିଁଝିଁଟ—କାଓ୍ୱାଲି )

ବନ୍ଧୁ ପ୍ରେମସିନ୍ଧୁ ନୀରେ ଶୁଭବିଧାନର ତରୀ
ବାହିଗଲେ ମହାନନ୍ଦେ ମହାପୁଣ୍ୟ ତେଜ ଧରି ।

ଛାଡ଼ିଗଲ ଏହି ଧରଣୀ ଚଢ଼ାଇଣ ସେ ତରଣୀ
ସେନା ଯାଉଛନ୍ତି ପ୍ରଭୁ ବିଶ୍ୱକର୍ଣ୍ଣଧାର ହରି ।

ଦୁରନ୍ତ ନିଷାଦ କାଳ ବିସ୍ତାରିଲା ଘୋର ଜାଲ
କଳୁରେ ପଶିନ୍ତୁ ହେଲ ଆତ୍ମା ନପାରିଲା ଧରି ।

ଘୋର କାଳ କବଳରୁ ଉଦ୍ଧାରନ୍ତି ଜଗଦ୍‌ଗୁରୁ
ଦେଖ ଦେଖ କୃପାବଳେ କେତେ ଆତ୍ମା ହେଲେ ପାରି ।

---

( ଝିଁ ଝିଁଟ—ଏକତାଲା )

ମିଳିବା ସକଳେ ଆନନ୍ଦ ମନେ
ସେହି ଉତ୍କଳ ଭୁବନେ ।

ସକଳ ଭଗିନୀ, ସକଳ ଭ୍ରାତା,
ପ୍ରେମଲୋକେ ଆଜ କରୁଛୁ ଯାତ୍ରା,
ନିତ୍ୟ ମଙ୍ଗଳ ସଦନେ ।

ମାଧବୀ ସନ୍ଧି ମଙ୍ଗଳ ଗାନେ
ନବୀନ-ଜୀବନ-ମୋହନ ତାନେ
ଅନନ୍ତ ଅମୃତ ଯୌବନେ ।

ଫୁଟିବ ମାନସ-କୁସୁମ-କଳି,
ଆଲୋକେ, ପୁଲକେ ଝଲକେ ଝଳି,
ସେହି ଆନନ୍ଦ ନନ୍ଦନେ ।

---

Digitized by srujanika@gmail.com

( ଭୈରବ-ଚୌତାଳ )

ବ୍ରହ୍ମ ଜୟ ଗାଇ ଗାଇ　　ଚଲ୍ ହବେ ଚଲ ଯାଇ
ପବନ ଆନନ୍ଦେ ଧ୍ୟାୟି　　ତାଙ୍କର ଅମୃତ ଧାମ ।

ପ୍ରାଣଗୁରୁ ତାଙ୍କୁ ଜାଣି　　ପ୍ରେମ ଭକ୍ତି ଯାବ ଆଣି
ଶୁଣି ତାଙ୍କ ବେଦବାଣୀ　　ହୁଅ ହବେ ପୂର୍ଣ୍ଣକାମ ।

ବିଶ୍ୱାସେ ଦର୍ଶନ କରି　　ପରମ ସୁନ୍ଦର ହରି
ତାଙ୍କ ଶ୍ରୀଚରଣ ଧରି　　କର ବିନୟେ ପ୍ରଣାମ ।

---

( ଜୟ ଜୟନ୍ତୀ-ଝାମ୍ପତାଳ )

ନୟନ ଅତୀତ ସେହି ପରଲୋକ ମହାଲୟେ
ଥାଉ ଯିବା ସଶରୀରେ ତେଜି ସକଳ ସଂଶୟେ ।

ଆହା ସେ ଅମୃତ ଲୋକ　　ନାହିଁ ଯହିଁ ମୃତ୍ୟୁ ଶୋକ
ଅନନ୍ତ ମିଳନ-ଭୂମି ସର୍ବ ହୃଦୟେ ହୃଦୟେ ।

ଶୋକେ ଜର୍ଜରିତ ପ୍ରାଣ　　କାହିଁକି ବ୍ରହ୍ମ-ସନ୍ତାନ
ଛନ୍ତି ହବେ ପ୍ରିୟଜନ ତହିଁ ଅଭୟ ଆଶ୍ରୟେ ।

ଯୋଗୀ ଋଷି ମହାଜନ　　କଲେ ଯହିଁକି ଗମନ
ଅନ୍ତର ଆତ୍ମୀୟ ଜନ ଯାଇଛନ୍ତି ସେ ନିଳୟେ ।

ବିଶ୍ୱାସେ ଆଶ୍ୱାସ ଲଭି　　ଦେଖ ହେ ଅମୃତ ଛବି
ସେ ଧାମେ ଅମର ହବେ ଜିଣି ଶୋକ-ମୃତ୍ୟୁ-ଭୟେ ।

---

Digitized by srujanika@gmail.com

( ବେହାଗ-ଆଡାଠେକା )

ଏ ଶୋକ ଅନ୍ଧାରେ
ତୁମ୍ଭର ଅମୃତ ଜ୍ୟୋତି ଦେଖାଅ ହେ ବାରେ ।

ଚୌଦିଗେ ମୃତ୍ୟୁ-ଡ଼ଗର ବୁଲୁଅଛୁ ନିରନ୍ତର
ଘେନ ଯାଉଅଛୁ କେତେ ଅତ୍ମୀୟ ସଖାରେ ।

ପ୍ରତି ପ୍ରାଣେ ଶୋକ ଛାୟା ବିକଳେ କାନ୍ଦଇ ମାୟା
ଦିଅ ହେ ସାନ୍ତ୍ୱନା ଏହି ଘୋର ନିରାଶାରେ ।

ମୃତ୍ୟୁ ମଧ୍ୟେ ପ୍ରଭୁ ତବ ଅମୃତର ମହୋତ୍ସବ
ଦେଖାଇ ବିନାଶ ନାଥ ଭୟ ଭାବନାରେ ।

---

(ପୂରବୀ—ଏକତାଲ)

ଦିନ ଯାଉଅଛି ବୋହି ।
ଦେଖନ୍ତି ଚନ୍ଦ୍ର ନିରତ ତ୍ରୈଲୋକ୍ୟ ଗୋସାଇଁ ।
କୁଟିଳତା ମିଥ୍ୟା ଅହଙ୍କାର କର ଦୂର,
ଅନିତ୍ୟ ଶରୀର ଦମ୍ଭେ ନିର୍ଭର ନ କର ।

ମର୍ତ୍ତ୍ୟ ମାନବ ମଣ୍ଡଳେ ଜାତ ହୋଇ କେହି,
ଚିରଜୀବୀ ହେବା ଟାଣ କରି ନ ପାରଇ ।

ନିତି ଯିବା ଆସିବା ଲଗିଛି ଜଗତରେ,
ନିଗୂଢ଼ ଈଶ୍ୱର ତତ୍ତ୍ୱ କିଏ ଜାଣି ପାରେ ।

ଆଜି ଯାହାଙ୍କ ପ୍ରତାପେ ପୃଥ୍ୱୀ କମ୍ପମାନ,
କାଲି ତାଙ୍କୁ ଦେଖିବାର ହେଉଛି ସପନ ।

ସୁହାସ ସୁବାସ ଭଙ୍ଗୀ ଗୃହିଣୀ ଛଟକ,
ଦେଖୁ ଦେଖୁ ନିମିଷକେ ହୋଇବ ଅଟକ ।

Digitized by srujanika@gmail.com

ଧନୀ ମାନୀ ଜ୍ଞାନୀ ବୁଦ୍ଧିହୀନ ବଳହୀନ,
ପ୍ରାଣାନ୍ତେ ସବୁର ଦଶା ହୋଇବ ସମାନ ।
ପଲଙ୍କ ସୁପାଠ ମନୋହର ବେଶ ଛାଡ଼ି,
ଧରା ପରେ ମୃତପିଣ୍ଡ ହେବ ଗଡ଼ାଗଡ଼ି ।
ଅତୁଲ ସମ୍ପଦ ମାନ ସମ୍ଭ୍ରମ ଆଗାର,
ସବୁ ଦୂର ହେବ କିଛୁ ନ ଯିବ ସଙ୍ଗର ।
କେମନ୍ତେ ଆସଇ ପ୍ରାଣ କେଣେ ଯାଏ ଛାଡ଼ି,
ଆଶ୍ଚର୍ଯ୍ୟ ପ୍ରଭୁ ନିୟମ କେ ପାରିବ ବଡ଼ି ।
ବ୍ରହ୍ମାଣ୍ଡ ଜଗତେ ହୋଇ ଏକ ଅଧିପତି,
ଲାଳନ ପାଳନ ଜୀବଗଣେ କରୁଛନ୍ତି ।
ସର୍ବବ୍ୟାପୀ ଗୁପ୍ତ ହୋଇ ସବୁ ଦେଖୁଛନ୍ତି,
ଅନ୍ତର୍ଯ୍ୟାମୀ ମନ କଥା ସହଜେ ଜାଣନ୍ତି ।
ଯେ ଯେମନ୍ତ ଭାବେ ତାଙ୍କୁ ହୃଦରେ ଭାବଇ,
ଅବହେଳେ ତେମନ୍ତ ସୁଫଳ ସେ ଲଭଇ ।
ତାଙ୍କ ପାଦପଦ୍ମେ ସଦା ଯାର ଥାଇ ଲକ୍ଷ୍ୟ,
ତାହାର କି କରି ପାରେ ଛାର ଭବଭକ୍ଷ୍ୟ ।
ଯତ୍ନ କର ସେ ପଦର ଯେରୂପେ ପାଇବ,
ମାୟା ମୋହ ପାପ ତାପ ଛାଡ଼ି ପଳାଇବ ।

---

( ଶିଶୁ—ଗୀତ )

## ପରମେଶ୍ୱର

ଯାହା ମୁଁ କରଇ, ଯାହା ମୁଁ କହଇ, ଯାହା ମୁଁ ଚିନ୍ତଇ ମନେ
ଜଗତର କର୍ତ୍ତା ପରମ-ଈଶ୍ୱର ଜାଣୁଛନ୍ତି ପ୍ରତିକ୍ଷଣେ ।

ମୋ ପାଶେ ଅଛନ୍ତି ଦିବସ ରଜନୀ ମହାପ୍ରଭୁ ପରାତ୍ପର
ଏକଥା ସୁମରି ହୃଦୟେ ତାହାଙ୍କୁ ପୂଜିବି ମୁଁ ନିରନ୍ତର ।

---

Digitized by srujanika@gmail.com

## ଧନ୍ୟ ଧନ୍ୟ ମହାପ୍ରଭୁ

ଧନ୍ୟ ଧନ୍ୟ ମହାପ୍ରଭୁ ତୁମ୍ଭର କୃପାରେ
ଆନନ୍ଦେ ରହିଲୁ ଆଜ ତୁମ୍ଭର ସଂସାରେ

ତୁମ୍ଭର କୃପାରେ ପାଇ- ଅଛୁ ପିତାମାତା
ଯାଇଛୁ କୃପାରେ ତବ ଗୁରୁ ଜ୍ଞାନ ଦାତା ।

ଭାଇ ଭଗ୍ନୀ ଦେଇଅଛ ହେ ପରମେଶ୍ୱର
ଗଢ଼ିଅଛ ଏ ଆକାଶ ପୃଥିବୀ ସାଗର ।

ସୂର୍ଯ୍ୟ ଚନ୍ଦ୍ର ତାରା ମେଘ ଅନଳ ପବନ
ପଶୁପକ୍ଷୀ ମୀନ ଆଦି ଯେତେ ଜୀବ ଗଣ ।

ତରୁ ଲତା ପୁଷ୍ପ ଫଳ ଗିରି ନଦୀ ବନ
ସବୁ କରିଅଛ ତୁମ୍ଭେ ହେ ଆଦିକାରଣ ।

ତୁମ୍ଭର କରୁଣା ପ୍ରଭୁ ଅଟଇ ଅପାର
କରଯୋଡ଼ି କରୁଅଛୁଁ କୋଟି ନମସ୍କାର

ଦିଅ ଜ୍ଞାନ ଦିଅ ପୁଣ୍ୟ ଦିଅ ହେ ସୁମତି
ଜୟ ଜୟ ଜୟ ପ୍ରଭୁ ହେ ଜଗତ ପତି ।

---

## ଧ୍ରୁବ

( ଶଙ୍କରାଭରଣ ବୃନ୍ଦେ )

( ୧ )

ଅଖିଳ ବ୍ରହ୍ମାଣ୍ଡପତି ମୋ ଜୀବନ ସ୍ୱାମୀ
ହେ ପରମ ପିତାମାତା ପ୍ରଭୁ ଅନ୍ତର୍ଯ୍ୟାମୀ,
ଧନ୍ୟ କରୁଣା ତୋହର,
ହେ କରୁଣାସିନ୍ଧୁ କାହିଁ ତାର ପଟାନ୍ତର ।

Digitized by srujanika@gmail.com

( ୨ )

ବ୍ରହ୍ମାଣ୍ଡର ଆଦିମୂଳ    ନିଖିଳ ବିଧାତା,
ସକଳ କଲୁଷହାରୀ    ହେ ମଙ୍ଗଳଦାତା
ତୋର ମଙ୍ଗଳ ସଙ୍ଗୀତ
ନିଖିଳ ଭୁବନ ଗାଏ    ହୋଇ ବିମୋହିତ ।

( ୩ )

ଦ୍ୟୁଲୋକେ ଭାସ୍କର ଚନ୍ଦ୍ର    ନକ୍ଷତ୍ର ନିକର
ଅନ୍ତରୀକ୍ଷେ ସମୀରଣ    ସଙ୍ଗେ ଜଳଧର,
ପ୍ରଭୋ, ଭୂଲୋକେ ସାଗର,
ଅଚଳ ଗହନ ନଦୀ    ପଶୁ ପକ୍ଷୀ ନର ।

( ୪ )

ସର୍ବେ ତୋ କରୁଣା ସୁଧା    କରୁଛନ୍ତି ପାନ,
କୋଟି ବ୍ରହ୍ମାଣ୍ଡର ନାଥ    ତୁ ପ୍ରେମନିଧାନ,
ପ୍ରଭୋ, ତୋ ପ୍ରେମକିରଣ
ଉଜ୍ଜ୍ୱଳଇ ବିଶ୍ୱବାସୀ    ହୃଦନିକେତନ

( ୫ )

ଜନକ ଜନନୀ ସୁତ    ସୁତା ଜାୟା ଧବ
ସହୋଦର ସହୋଦରା    ଆତ୍ମୀୟ ବାନ୍ଧବ
ପ୍ରଭୋ, ଏ ସର୍ବ ସମ୍ବନ୍ଧ
ତୋର ଦୟା ନିଦର୍ଶନ    ଆହେ ଆଦିକନ୍ଦ ।

( ୬ )

ବିରାଜିତ ତୁହି ନାଥ    ସକଳ ଜୀବନେ,
ସମ୍ପଦେ ବିପଦେ ସଦା    ଜୀବନେ ମରଣେ,
ପୂର୍ଣ୍ଣ ମଙ୍ଗଳ ଆଳୟ,
ଦେଉଅଛୁ ସର୍ବଜନେ    ଅଭୟ ଆଶ୍ରୟ ।

Digitized by srujanika@gmail.com

( ୭ )

ବିଶ୍ୱ-ଗୁରୁ ବିଶ୍ୱରାଜ ବିଶ୍ୱ ପିତାମାତା,
ଶଶ୍ୱଜନ-ପ୍ରାଣସଖା ଦୁଃଖହାରୀ ଦାତା,
ଦୀନବନ୍ଧୁ କୃପାସିନ୍ଧୁ,
ସୁର ନର ମାଗୁଛନ୍ତି ତୋର କୃପାବିନ୍ଦୁ,

( ୮ )

ସଙ୍କଟପୂରିତ ଘୋର ଭବସିନ୍ଧୁ ଜଳେ
ଏକମାତ୍ର କର୍ଣ୍ଣଧାର ତାରୁ ତୁ ସକଳେ,
ତୋର ମଙ୍ଗଳ ବିଧାନ,
କରିଅଛୁ ମରଣକୁ ଅମୃତ ସୋପାନ ;

( ୯ )

ହେ ଆନନ୍ଦମୟ ଜ୍ୟୋତି— ଭୁବନ ପାଳକ,
ଅଧମ ଅକ୍ଷମ ମୁହିଁ ଅବୋଧ ବାଳକ,
ଜ୍ଞାନଦାତା ଭଗବାନ,
ଦିଅ ମୋତେ ଶୁଭବୁଦ୍ଧି ଦିଅ ଦିବ୍ୟଜ୍ଞାନ ।

( ୧୦ )

ସତ୍ୟ ପଥେ ଧର୍ମପଥେ ଘେନି ଯାଅ ମୋତେ,
ଭସାଅ ପରାଣ ମୋର ତବ ପ୍ରେମସ୍ରୋତେ,
ପ୍ରଭୋ ହେ ପରମ ଶରଣ,
ଏ ଜୀବନ ଶ୍ରୀଚରଣେ କଲି ସମର୍ପଣ ।

---

## ଧର୍ମ

କାଲ୍‌କାଲ୍ ଧର୍ମ— ଧନ ମୁଁ ସଞ୍ଚିବି
ଏ ଜୀବନ ଅନିଶ୍ଚିତ,
କେ ଜାଣେ କାହାର ଆଜ ମୃତ୍ୟୁକାଳ
ହୋଇଯିବ ଉପସ୍ଥିତ ।

Digitized by srujanika@gmail.com

କ୍ଷୁଦ୍ର କୀଟ ହୋଇ          ଅଳ୍ପ ଅଳ୍ପ କରି
ରଚଇ ବଲ୍ମୀକ-ଘର;
ମୂଢ଼ି ସେହିପରି          ସଞ୍ଚିବ ଯତନେ
ପୁଣ୍ୟ ଧନ ନିରନ୍ତର ।

ବାକ୍ୟରେ ମନରେ          ଅଥବା କର୍ମରେ
ନ କରିବ ପାପାଚାର,
ତେଜିବ ଅସତ୍ୟ          ହିଂସା କପଟତା
ଲୋଭ କ୍ରୋଧ ଅହଙ୍କାର ।

ସତେ ମନରଖି          ସତ୍ୟକୁ ବୁଝିବ,
ଗାଇବ ସତ୍ୟର ଜୟ,
ମଙ୍ଗଳ କାର୍ଯ୍ୟରେ          ଲାଗିଥିବ ସଦା
ତେଜିଣ ସକଳ ଭୟ ।

ଏହୁ ମହାକାଶେ          ଏ ମୋର ଆତ୍ମାରେ
ବିରାଜିତ ମହେଶ୍ୱର,
ସେ ମୋତେ କଦାପି          ତେଜି ତ ନାହାନ୍ତି
ପ୍ରାଣେ'ଛନ୍ତି ନିରନ୍ତର ।

ଜୀବନେ ମରଣେ          ସମ୍ପଦେ ବିପଦେ
ରୋଗେ ଶୋକେ କେତେବେଳେ
କେବେହେଁ ନ ଛାଡ଼ିବ          ସେ ପ୍ରାଣ ସଖାଙ୍କୁ,
ସେ ମୋତେ ତାରିବେ ହେଲେ ।

ସେ ଅଧିପତି          ସେ ଅନ୍ତର୍ଯ୍ୟାମୀ
ସେ ଶୁଭବୁଦ୍ଧି ଦାତା,
ଧର୍ମର ଆକର          ଅନନ୍ତ ଈଶ୍ୱର
ସେ ଭୁବନ ବିଧାତା ।

ତୁମକୁ ପ୍ରଣାମ, ତୁମକୁ ପ୍ରଣାମ
ଆହେ କୃପାନିଧି, ଏ ଭବ ବାରିଧି
ପାରକର ପ୍ରାଣାରାମ ॥

ଦୁଇଟି ହୃଦୟ ହୋଇଛୁ ଏକ
ମିଳନ ମନ୍ଦିରେ ଶୁଭିଉ ଶଙ୍ଖ
ମଳୟ ମରୁତ ବହେ, ଗାଏ ପିକ
ସୁମର ତୁମର ନାମ ॥

ଆଜି ଏ ବାସରେ ଆସ ଅବତରି,
ନାଥ, ତୁମେ ଆସ ନିତ୍ୟରୂପ ଧରି,
ପୁହାଇ ଏ ନିଶି ମିଳନ ଶର୍ବରୀ,
ଉଜଳି ଏ ଦିବ୍ୟ ଧାମ ॥

---

ଯେ ତରଣୀ ଆଜ ଭାସିଲା ସାଗରେ
ତୁମେ ତ ତା'ର ହେ ନାଉରୀ
ଏ ଭବ ସାଗରେ ତୁମେ ତାଙ୍କ ସଖା
କଟାଇ ଜାଣିଛ ଭଉଁରୀ ॥

ନବୀନ ଜୀବନ ମଧୁର ପବନ
ନବ ନବ କେତେ ମଧୁ ଗୁଞ୍ଜରଣ
ମଧୁର ମିଳନେ ତବ ପୁଣ୍ୟ ନାମ
ବାଜେ ଗଗନେ, ପବନେ ସଞ୍ଚରି ॥

ଏ ମିଳନ ରାତି ପ୍ରାହ୍ଣବ ମଙ୍ଗଳେ
କର ଆଶୀର୍ବାଦ ଆଜ ଏ ଯୁଗଳେ
ଜୀବନ ଦୁହିଁଙ୍କ ମିଳାଅ କୌଶଳେ
ଦେଖାଇ ତୁମ ଚାତୁରୀ ॥

---

Digitized by srujanika@gmail.com